# ଅଥ ନେତାରସାୟନମ୍

ଜବସାରଥି ଡାଃ ଗିରିଜାଶଙ୍କର ଶ୍ରୀଚନ୍ଦନ ମହାପାତ୍ର

ପ୍ରକାଶକ :




କଟକ-୨

ଅଥ ନେତାରସାୟନମ୍ (ରମ୍ୟରଚନା) ।। ଲେଖକ : କବିସାରଥି ଡାଃ ଗିରିଜା ଶଙ୍କର ଶ୍ରୀଚନ୍ଦନ ମହାପାତ୍ର ।। ପ୍ରକାଶକ : ଅଗ୍ରଦୂତ, ବାଙ୍କାବଜାର, କଟକ-୨ ।। ପ୍ରଥମ ପ୍ରକାଶ : ୧୯୯୯ ।। ମୁଦ୍ରଣ : ମା' ତାରତାରିଣୀ ପ୍ରିଣ୍ଟର୍ସ, ସୂତାହାଟ, କଟକ-୧ ।। ମୂଲ୍ୟ : ପଅଁତିରିଶ ଟଙ୍କା ।।

ATHA NETARASAYANAM ।। By : Kabisarathi Dr. G. S. S. Mohapatra ।। Published by : Agraduta, Banka Bazar Cuttack-2 ।। First Edition—1999 ।। Printed by : Maa Taratarini Printers, Sutahat, Cuttack-1 ।। Price : Rs. 35-00 ।।

ISBN 81-86354-64—6

ମୋର ପ୍ରଥମ ରମ୍ୟରଚନା "ଅଥ ନେତାରସାୟନମ୍" ଶୁଣି ଯିଏ ମୋତେ ଆନନ୍ଦରେ କୁଣ୍ଢାଇ ପକାଇଥିଲେ, ମୋ ମଥାରେ ତାଙ୍କର ଆଶୀର୍ବାଦ ହସ୍ତ ଥାପି ଦେଇଥିଲେ, ମୋତେ ଆହୁରି ଅଧିକ ଲେଖିବା ପାଇଁ ଅସୀମ ପ୍ରେରଣା, ଅଫୁରନ୍ତ ଉତ୍ସାହ ଯୋଗାଇ ଥିଲେ, ଓଡ଼ିଆ ଭାଷା-ସାହିତ୍ୟର ସେଇ ଅପ୍ରତିଦ୍ୱନ୍ଦୀ ରମ୍ୟ କଥାକାର, ଫୁଟା ଡଙ୍ଗାର ସଫଳ ନାଉରୀ ପରମ ପୂଜ୍ୟ ସ୍ୱର୍ଗତଃ ଫତୁରାନନ୍ଦଙ୍କ ଅମୀୟ ଚରଣରେ ମୋ ଲେଖନୀର ଏଇ ପ୍ରଥମ ଅର୍ଘ୍ୟ ।

ଜଗନ୍ନାଥ ଶ୍ରୀଚନ୍ଦନ

# କୃତଜ୍ଞତା

ଏଥିରେ ସନ୍ନିବେଶିତ ରମ୍ୟରଚନା ଗୁଡ଼ିକ ସମାଜ, ସମ୍ବାଦ, ସହକାର, ଅଙ୍କୁର, ଗନ୍ଧହୂତ, ସୁଲେଖା, ଧରିତ୍ରୀ, କୁରୁକ୍ଷେତ୍ର, ଅଗ୍ନିଶିଖା, ଧ୍ୱନି-ପ୍ରତିଧ୍ୱନି, ବିଶେଷ ଖବର, ଲୋକ କଥା, ଲେଖା, ମେଘପୁଷ୍ପ, ବନପୁଷ୍ପ, ତମସା, ବାର୍ତ୍ତାଉର୍ମି, ଶତଭିଷା, ଅଗ୍ନିସ୍ଫୁଲିଙ୍ଗ, ଦୁର୍ମୁଖ, ସତ୍ତା, ରଥୀସାରଥି, ସ୍ୱଲଗ୍ନା, ସିଂହନାଦ, ପ୍ରତୀକ, ଟିକେହସ, ମାତୃଭଷା, ଶ୍ରୀଗୁଣ୍ଡିଗ୍ ଆଦି ସମ୍ବାଦପତ୍ର, ମାସିକ ଓ ସାପ୍ତାହିକ ପତ୍ରିକାମାନଙ୍କରେ ପ୍ରକାଶିତ ଏବଂ ଉଚ୍ଚ ପ୍ରଶଂଶିତ । ସଂପୃକ୍ତ ସମ୍ପାଦକ ତଥା ମୋର ଶୁଭେଚ୍ଛୁ ଅଗଣିତ ପାଠକ ପାଠିକାଙ୍କୁ ଆନ୍ତରିକ ବଧେଇ ତଥା ଅଶେଷ କୃତଜ୍ଞତା । ଓଡ଼ିଶାର ଅଗ୍ରଣୀ ପ୍ରକାଶକ "ଅଗ୍ରଦୂତ" ନେତାରସାୟନମ୍ ପ୍ରସ୍ତୁତ କରି ବିତରଣ କରିବାର ସମସ୍ତ ଦାୟିତ୍ୱ ନେଇଥିବାରୁ ମୁଁ କୃତଜ୍ଞ ।

କବ୍ୟସାରଥି ଶ୍ରୀଚନ୍ଦନ

# ନିଜକଥା

ନାଟକ ରଚନାରୁ ହିଁ ମୋ ସାରସ୍ୱତ ଜୀବନର ଅୟମାରମ୍ଭ । ପରେ ପରେ ମୁଁ ଯେତେବେଳେ କବିତା ରଚନାରେ ମନୋନିବେଶ କଲି, ସେତେ-ବେଳେ କିଛି ବନ୍ଧୁ ମୋତେ ପରାମର୍ଶ ଦେଲେ, "ସାମାଜିକ ସଂସ୍କାର ତଥା ଜନସଚେତନତା ପାଇଁ ଆପଣ ରମ୍ୟରଚନା ଲେଖନ୍ତୁ, ଖୁବ୍ ଚମତ୍କାର ହେବ । ଆପଣଙ୍କ ନାଟକମାନଙ୍କରେ ବ୍ୟଙ୍ଗ, ସମାଲୋଚନାମୂଳକ ସଂଳାପ ବେଶ୍ ପ୍ରଭାବଶାଳୀ । ଚେଷ୍ଟା କରନ୍ତୁ ; ଆପଣ ପାରିବେ ।"

ଚିନ୍ତାରେ ପଡ଼ିଗଲି ଯେତେବେଳେ ଜଣୈକ ସମ୍ପାଦକ ତାଙ୍କ ପତ୍ରିକା ନିମନ୍ତେ ରମ୍ୟରଚନାଟେ ଲେଖି ଦେବାକୁ ଅନୁରୋଧ କଲେ, କେମିତି ଲେଖିବି ? କିପରି ଲେଖିବି ? ପୂଜ୍ୟ ଫତୁରା ନନ୍ଦ, ଚୌଧୁରୀ ହେମକାନ୍ତ, ମହାପାତ୍ର ନୀଳମଣି ସାହୁଙ୍କର କିଛି ରଚନା ପଢ଼ିଲି । ସେଇ ଦିନଠୁଁ ମୁଁ ଲେଖିବାକୁ ଆରମ୍ଭ କରିଛି ତ ଲେଖି ଚାଲିଛି । ଏ ଦିଗରେ କେତେ ସଫଳତା ପାଇଛି ତାହା ମୋର ପ୍ରିୟ ପାଠକମାନେ କହିବେ । ପୂଜ୍ୟ ✓ ଫତୁରା ନନ୍ଦଙ୍କୁ ମୋର ଗୁରୁ ରୂପେ ମୁଁ ସ୍ୱୀକାର କରିଛି । ତାଙ୍କରି ଆଶିଷକୁ ପାଥେୟ କରି ଆଗେଇ ଚାଲିଛି ।

**କୃଷ୍ଣପାର୍ଥ ଶ୍ରୀଚନ୍ଦନ**

ଏ/୪-ରେଳବାଇ କଲୋନୀ, ପାରାଦ୍ୱୀପ,
ଅଠରବାଙ୍କୀ-୭୫୪୧୨୦

## ଏଇ ଲେଖନୀର ଅନନ୍ୟ ଅର୍ଘ୍ୟ :

- ଗଭୀର ଜଳର ମାଛ
- ସୁବର୍ଣ୍ଣରେଖା
- ଅଭିଶାପ
- ଉପେକ୍ଷିତା
- ମେମ୍‌ସାହେବ
- ସୂର୍ଯ୍ୟମୁଖୀ
- ହଜିଲା ଅତୀତ
- ତମେ
- ଭୂମିଠାରୁ ଭୂମାଯାଏ
- ଆମେ ସବୁ ଶିଶୁରେ
- କବି ଓ ପ୍ରିୟତମା
- ମଜା ମଜା ଗପ ଆଉ ମନଛୁଆଁ ଗୀତ
- ଆଜି ଏଇ ତ୍ରିରଙ୍ଗୀ ପତାକା ତଳେ
- ଆଶ୍ଚର୍ଯ୍ୟ ହେଲେ ବି ସତ୍ୟ
- କୁତୁରୁ କୁତୁରୁ କୁତୁ
  ଏମିତି କ'ଣ ହୁଅନ୍ତାନି କେବେ ?

---

—ପ୍ରକାଶ ପ୍ରତୀକ୍ଷାରେ—

'ଦାଢ଼ୀ ଏବଂ ହାତକଡ଼ି'

'ଅଜବଗଜବ'

'ଭାରତୀୟ ପେଟ'

'ପୌରୁଷ ଗ୍ରନ୍ଥି'

## 'ନେତାରସାୟନମ୍'ର ବିଭିନ୍ନ ଉପାଦାନ

**ବିଷୟ** **ପୃଷ୍ଠା**

# ଅଥ ନେତାରସାୟନମ୍

ନେତା ଆଜ୍ଞା ! ନେତା । ଆଧୁନିକ ଯୁଗର ଚଳନ୍ତି ଭଗବାନ । ଜନତା ଜନାର୍ଦ୍ଦନ । ଦରିଦ୍ର ନାରାୟଣ । ଜନରଞ୍ଜନ । ମନମୋହନ । ସବୁରି ଭାଗ୍ୟ ବିଧାତା । ପ୍ରଚଣ୍ଡ କ୍ଷମତାଶାଳୀ ଶାସନକର୍ତ୍ତା । ଆଇନ ପ୍ରଣେତା । ନେତା ହେବାଠାରୁ ଆଉ ବଳି ସୌଭାଗ୍ୟ କ'ଣ ଅଛି ? ଆଲିଶାନ କୋଠାରେ ରହିବେ । ମାଂସ, ପଲଉ, ଟୋଷ୍ଟ, ରୋଷ୍ଟ, କଟ୍‌ଲେଟ୍, ସାଣ୍ଡଓ୍ଵିଚ ଖାଇବେ । ଘିଅ, ଦୁଧ, ମଦରେ ଭାସିବେ । ଫରେନ୍ ଲିକରରେ ପହଁରିବେ । ଦାମୀ ପୋଷାକ ପିନ୍ଧିବେ । ମାରୁତି, ଟାଟା ସୁମୋ ଚଢ଼ିବେ । ପ୍ଲେନ୍‌ରେ ଉଡ଼ିବେ । ପଞ୍ଚତାରକା ହୋଟେଲରେ ସୁନ୍ଦରୀ, ସୁକୁମାରୀ, ସୁନୟନୀ, ସୁହାସିନୀ ଲଲାମ ଲାବଣ୍ୟମୟୀ ସୁଶ୍ରୀ ତନ୍ୱୀଙ୍କ ସହିତ ରାସଲୀଳାରେ ମାତିବେ । ଶିଳାନ୍ୟାସ, କୀଳାନ୍ୟାସ, ଶଳାନ୍ୟାସ କରିବେ । ସୁଇସ୍ ବ୍ୟାଙ୍କରେ ଆକାଉଣ୍ଟ ଖୋଲିବେ । ଥରେ ନେତା ବନିଗଲେ ଅଖଣ୍ଡ ପ୍ରଭାବଶାଳୀ ହୋଇଯିବେ । ଇଚ୍ଛା ଅନୁସାରେ ସବୁକିଛି କରିପାରିବେ । ଖୁନ୍ କରନ୍ତୁ, ଲୁଣ୍ଠନ କରନ୍ତୁ, ଧର୍ଷଣ କରନ୍ତୁ, ଶୋଷଣ କରନ୍ତୁ, ଗୁଣ୍ଡାଗର୍ଦ୍ଦି କରନ୍ତୁ, ସାତଖଣ୍ଡ ମାଫ୍ । ଆପଣଙ୍କ ହୁକୁମ ତାମିଲ କରିବା ପାଇଁ କେତେ ରାମରା, ବେଲରା, କୁଜା, ପାଜା, ଦାଦାଜୀ, ଗୁଣ୍ଡାଜୀ ହାଁଜୀ, ହାଁଜୀ କହି ଆଗେଇ ଆସିବେ ।

ଏତେକଥା ଜାଣିବା ପରେ ଆପଣଙ୍କ ମନ ଉବୁଟୁବୁ ହୋଇ ସାରିବଣି । ନେତା ହେବା ପାଇଁ ପ୍ରବଳ ଉଚ୍ଛା ଉଦ୍‌ବେଳିତ ହେବଣି । ନେତା ହେବା ପାଇଁ କିଏ ନରାହେଁ ଆଜ୍ଞା ? କିନ୍ତୁ ; ସମସ୍ତେ କ'ଣ ଖାଣ୍ଟି ଆଗ ମାର୍କା ସୁପର ଡୁପର ମେଗାପାଓ୍ଵାର ଫୁଲ୍ ନେତା ହୋଇ ପାରନ୍ତି ? ସାବଧାନ ନହେଲେ ନେତା ହେବାକୁ ଯାଉଯାଉ ମଝିରାସ୍ତାରେ କଚଡ଼ା ଖାଇ ହରିନାମ ଜପିବେ । ଫୁଲମାଳ ବଦଳରେ ଯୋତା ପ୍ରହାର ଖାଇ ଗଳିରେ କନ୍ଦିରେ ବୁଲାକୁକୁରଙ୍କ ପରି ଘୂରି ବୁଲିବେ । ଲୋକେ ପଚାଅଣ୍ଡା, ସଡ଼ା ଟମାଟର ବର୍ଷଣ କରିବେ ଆପଣଙ୍କ ଉପରେ । ଉତ୍ତମ ମଧ୍ୟମ ବି ମିଳିପାରେ ।

ତାଙ୍କି ପଡ଼ୁଛନ୍ତି କି ଆଜ୍ଞା ? ଧୈର୍ଯ୍ୟ ଧରନ୍ତୁ । ଆପଣ ନେତା ନିଶ୍ଚିତ ହେବେ । ଅଲବତ୍ ହେବେ । କେହି ଆପଣଙ୍କୁ ରୋକି ପାରିବେ ନାହିଁ । ସଫଳ ନେତା ଭବରେ ବାଜିମାତ୍ କରିବେ । ଆମ୍ଭେ ଆପଣଙ୍କୁ ସବୁ ପ୍ରକାରେ ଅକୁଣ୍ଠ ସାହାଯ୍ୟ କରିବୁ । ନେତା ବନେଇ ଛାଡ଼ିବୁ । ବହୁ ପରୀକ୍ଷା, ନିରୀକ୍ଷା କରି ଆମ୍ଭେ ଏକ ଅବିଶିଷ୍ଟ ରସାୟନ ପ୍ରସ୍ତୁତ ବିଧି ଆବିଷ୍କାର କରିଛୁ । ଏଇ ରସାୟନ ସେବନ କରି ଯେ କୌଣସି ବ୍ୟକ୍ତି ସଫଳ, ଜନପ୍ରିୟ, ପ୍ରଭବଶାଳୀ ନେତା ହୋଇ ପାରିବେ । ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ଶତକଡ଼ା ଶହେ କୋଡ଼ିଏ ପର୍ସେଣ୍ଟ ଗ୍ୟାରେଣ୍ଟି । ଠକିଯିବାର ପ୍ରଶ୍ନ ଉଠୁନାହିଁ । ଆପଣ ନିଜେ ସାମାନ୍ୟ ପରିଶ୍ରମ କରି ଜ୍ଞାତି, ବନ୍ଧୁ, ସମର୍ଥକଙ୍କ ଜରିଆରେ ସବୁ ସରଞ୍ଜାମ ବିନା ମୂଲ୍ୟରେ ସଂଗ୍ରହ କରିପାରିବେ । ଭରତର ଗଳିକନ୍ଦିରେ ଖୋଜିଲେ ସବୁକିଛି ଅକ୍ଳେଶରେ ମିଳି ପାରିବ । ରସାୟନ ପ୍ରସ୍ତୁତି ପାଇଁ କୌଣସି କବିରାଜଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିବନି । ନିଜେ ଘରେ ବସି ଖୁବ୍ ସହଜ ସରଳ ଉପାୟରେ ପ୍ରସ୍ତୁତ କରିପାରିବେ । ଥରେ ପରୀକ୍ଷା କରି ଦେଖନ୍ତୁ । ବିଧି ମୁତାବକ ରସାୟନ ସେବନ କରି ଆପଣ ଯଦି ଯଥାଶୀଘ୍ର ସଫଳ ନେତା ନହୋଇ ପାରିବେ ତେବେ ମୋ ନାମରେ କୁତ୍ତା ପାଳିବେ । ମନଇଛା ବିଚରାସ୍ତାରେ ଅଟକାଇ ଗାଳିଫଜିତ୍ କରିବେ । ମୁଁ ଆଦୌ ତୁଣ୍ଡ ଖୋଲିବନି ।

ବେଶ୍, କାଳବିଳମ୍ବ ନକରି ନିମ୍ନ ତାଲିକାନୁସାରେ ସବୁ ସରଞ୍ଜାମ ସଂଗ୍ରହ କରି ପକାନ୍ତୁ । ପରିମାଣ ସାମାନ୍ୟ ଏପଟ ସେପଟ ହେଲେ ମଧ୍ୟ ଚଳିବ । କୌଣସି ଅସୁବିଧା ହେବ ନାହିଁ । ମିଥ୍ୟାଚୂର୍ଣ୍ଣ ପଚିଶ ଗ୍ରାମ୍, ବିଶ୍ୱାସ-ଘାତକତା ମୂଳ, କପଟ ମୂଳ, ଛଳନା ମୂଳ, କୃତଘ୍ନତା ମୂଳ ପ୍ରତ୍ୟେକରୁ ଶହେ ଗ୍ରାମ୍ ଲେଖାଏଁ, ଘୋଷଖୋସି ଫୁଲ, ଭଲେଇ ହେବା ବୀଜ, ଦଗାବାଜୀ ଫଳ, ଦଲଲି ଗ୍ଲୁଲି, ପ୍ରତ୍ୟେକରୁ ପଚିଶ ଗ୍ରାମ୍ । ଆଗକୁହା ଲବଣ, ପ୍ରତିଶ୍ରୁତି ମଧୁ, ସମାଜ ସେବା ଭସ୍ମ, ଦେଶଭକ୍ତି ଚୂର୍ଣ୍ଣ, ତ୍ୟାଗର କଳାମରିଚ, ନିଷ୍ଠାର ମଧୁଶି, ଆଦର୍ଶର ପତି, ଅହିଂସା ଅଳେଇଚ, ପ୍ରତିହିଂସା କେଶର, ନେହେରୁ ଅର୍କ, ପଟେଲ ଲୌହଭସ୍ମ, ସୁବାଷ କସ୍ତୁରୀ, ଇନ୍ଦୀର ସୁରା, ରାଜୀବ ମହୁରା, ଆଡ଼ଭାନି ଚିନି, ସୋନିଆ ହରିତକୀ, କେଶରୀ ବାହାଡ଼ା, ବାଜପେୟୀ ଅଁଳା, ପ୍ରତ୍ୟେକରୁ କୋଡ଼ିଏ ଗ୍ରାମ୍ ଲେଖାଏଁ, ସ୍ଲୋଗାନ କାଫ୍ରାନ୍, କୁମ୍ଭୀର କାନ୍ଦଣା ରସ, ନରସିଂହ କନ୍ଦା, ସୁଖରମ କେଶର, ହର୍ଷଦ ଜାଇଫଳ, ଥାକ୍ରେ ମିର୍ଚ୍ଚି, କାଂଶୀ-ରମ ଗୁଡ଼, ମାୟାବତୀ ଜୁଆଣି, ପ୍ରତ୍ୟେକରୁ ପଚିଶ ଗ୍ରାମ୍ ଲେଖାଏଁ ଆଣି ସମପରିମାଣର ଭାଷଣବାଜୀ ଗୁଣ୍ଡ, ସନ୍ତ୍ରାସବାଦୀ ଖଣ୍ଡ, ଦଳବଦଳ ମଣ୍ଡ ମିଶାଇ

ପ୍ରଗ୍ରର ଜଳରେ ଭିଜେଇ ନିର୍ବାଚନ ଡେକ୍‌ଚିରେ କୁଟନ୍ତୁ । ତାକୁ ଗ୍ମଗ୍ କଲରେ ଚିତାକଟା ମୂଷଳ ଦ୍ୱାରା ତେଲୁଆ ଘାଟିରେ ରଗଡ଼ନ୍ତୁ । ତାପରେ ଜାଲିଆତି ଗ୍ଲୁଣୀରେ ଗ୍ରୁଣି ଗ୍ରିଶବିଶ୍ ରସ ଢାଳି, ଚରଣଚୁଟିଆ ଚୁଲିରେ ବସାଇ, ସାମ୍ପ୍ରଦାୟିକତା ନିଆଁରେ ଗରମ କରନ୍ତୁ । ଧର୍ମର ବିଅଣାରେ ହାଓ୍ୱା ଦିଅନ୍ତୁ । ଭଲଭବରେ ଆଉଟି ସାରି ଖୋସାମତି ପରତରେ ଢାଳି ଥଣ୍ଡା କରି ଆତ୍ମସ୍ୱାର୍ଥ ବୋତଲରେ ରଖି ଆବଶ୍ୟକ ପରିମାଣର ଗାନ୍ଧୀ ଏସେନ୍‌ସ ଢାଳି ଠିପି ଟାଇଟ୍ କରି ଦିଅନ୍ତୁ । ରସାୟନ ପ୍ରସ୍ତୁତ ହୋଇଗଲା ।

ପ୍ରତିଦିନ ସକାଳେ, ସନ୍ଧ୍ୟାରେ ଖଚମିଛ ଖେଚୁଡ଼ି ଖାଇବା ପରେ ବେହ୍ୟାଦୁଧ ସହିତ ଦୁଇଗ୍ରମଚ ନେତା ରସାୟନ ମିଶାଇ ସେବନ କରନ୍ତୁ । ସାତ ଦିନରେ ଥରେ ବେଇମାନୀ ଘୃତ ସର୍ବାଙ୍ଗରେ ମାଲିଶ୍ କରି ବାହାନାର ଥଣ୍ଡା ଜଳରେ ସ୍ନାନ କରିବେ । ରସାୟନ ସେବନ କରୁଥିବା ସମୟ ସୀମା ମଧ୍ୟରେ କେତେକ ଆନୁସଙ୍ଗିକ ବିଧି ପାଳନ କରିବାକୁ ଭୁଲିବେ ନାହିଁ । ନହେଲେ ସଫଳତା ମିଳିବାରେ ସାମାନ୍ୟ ବିଳମ୍ବ ଘଟିପାରେ । କୌଣସି ନେତାଙ୍କର ଗ୍ମଗ୍ରଗିରି କରି ତାଙ୍କ ଗ୍ରମର ପଦାରେ ପକାଇ ତାଙ୍କୁ ଚିତା କାଟିବେ । ଆଦମକଦ୍ ଆଇନା ସାମନାରେ ବେକରେ ଓଜନିଆ ଫୁଲ ମାଳଟେ ପକାଇ ହାତ ଗୋଡ଼ ଗ୍ରୁଟି ଭଷଣ ଦେବାର ଆଦବ କାଇଦା ଶିଖି ନେବେ । ଗୁଣ୍ଡାମି, ଜୁଆଗ୍ରେଗ୍ରି, ଭଲେଇ ହେବା, ବାହାସ୍ଫୋଟ ମାରିବା, ଭୁତେଇବା, ହତ୍ୟା, ଲୁଣ୍ଠନ ଦଙ୍ଗା ଭିଆଣ, ମିଛିମିଛିକା ସଦ୍‌ଭବନା ସ୍ଥାପନ ଆଦି ବିଷୟରେ ସାଧାରଣ ଜ୍ଞାନ ଆହରଣ କରିବେ । ଡିଗ୍ରୀ ଡିପ୍ଲୋମା ହାସଲ କରି ପାରିଲେ ଅତ୍ୟୁତ୍ତମ ।

ରସାୟନ ସେବନର ଗ୍ରି ସପ୍ତାହ ମଧ୍ୟରେ ଅନ୍ତତଃ ଥରେ ଅନଶନ, ଦି'ଥର ଧର୍ଷଣ, ଗ୍ରି ପାଞ୍ଚଥର ଭଷଣ ଦେବାର ବ୍ୟବସ୍ଥା କରିବେ । ଲୋକ ନଜୁଟିଲେ ଗ୍ମଗ୍ରଙ୍କ ଦ୍ୱାରା ଟ୍ରକ, ଟେ୍କର, ବସ୍, ଟ୍ରେନ୍‌ରେ ଗାଁ ଗହଳରୁ ଡକାଇ ଆଣି ସେମାନଙ୍କୁ ଖୁଆଇ ପିଆଇ ମୁଡ଼ିଆ ଝାଡ଼ିବେ । ପାଇଖାନା ହେଉ କି ବାଥରୁମ ହେଉ, ପୋଲ ହେଉ ବା ଖାଲ ହେଉ ଗୋଟାଏ ଦିଟା ଯୋଜନାର ଶିଳାନ୍ୟାସ କରିବେ । ମଦ ଦୋକାନ ହେଉ କିମ୍ବା ସାର୍ବଜନୀନ ଧର୍ଷଣକେନ୍ଦ୍ର ହେଉ ତାର ଉଦ୍‌ଘାଟନ କରିବେ । ତାପରେତ ଆପେ ଆପେ ନେତା ବନିଯିବେ । ବାକି ରହିଲା ଲେବୁଲ କଥା । ପରିସ୍ଥିତି, ପରିବେଶ, ଗ୍ମଗ୍ର-ବେଲଗ୍ରଙ୍କ ସହିତ ସାଲିସ୍ କରି ଆଞ୍ଚଳିକ, ଜାତୀୟ, ଆନ୍ତର୍ଜାତୀୟ ଆଦି ଯେ କୌଣସି ଏକ ଖାସା ଲେବୁଲ ମାରି ହେବେ । ହାଇକମାଣ୍ଡଙ୍କୁ ପଟେଇ

ବା ଦଳବଦଳ କୌଶଳ ଅବଲମ୍ବନ କରି ଟିକେଟ ଖଣ୍ଡିଏ ହାତେଇ ନିର୍ବାଚନ ମଇଦାନକୁ ଡେଇଁ ପଡ଼ିବେ । ଲୋକଙ୍କୁ ଭୁଲେଇ, ମଦ, ହାଣ୍ଡିଆ ପିଆଇ, ନୋଟ୍ ଧରେଇ ନଚେତ୍ ଲଠି, ବନ୍ଧୁକ ଦେଖାଇ ଜୀତାପଟ ମାରିନେବେ । ବେଶ୍ ଆପଣ ହୋଇଯିବେ ଅପ୍ରତିଦ୍ୱନ୍ଦୀ ଜନତା ଜନାର୍ଦ୍ଦନ, ଜନପ୍ରିୟ, ଜନଗଣ ମନ ଅଧିନାୟକ । ସମସ୍ତଙ୍କୁ ଲଲୁଙ୍କ ଲଣ୍ଠନ ଦେଖାଇ ଗାଲୁମାରି ଭଲୁ ଧରାଇ ଦେବେ ।

ତଥାପି ; ଆଜ୍ଞା ଟିକେ ସାବଧାନ ଥିବେ । "ନେତାଇଟିସ୍" ଏକ ସାଘାତିକ ସଂକ୍ରାମକ ରୋଗ, କ୍ୟାନ୍ସର, ଏଡ୍‌ସ୍‌ଠାରୁ ମାରାତ୍ମକ । ଚୌକୀ ଲାଳସା ଯେତେ କମ୍ କରିବେ ସେତେ ଜନପ୍ରିୟତା ହାସଲ କରିବେ । ନହେଲେ...... ।।



# ନେତା ଉପାଖ୍ୟାନମ

ପ୍ରିୟ ପାଠକ, ପାଠିକାଏ ! ନେତାମାନଙ୍କ ସଂପର୍କରେ ଅଧିକ କ'ଣ ବା ବଖାଣିବି ? ସେମାନଙ୍କୁ ନଚିହ୍ନେ କିଏ ? ଆଜିକାଲି ଯୁଗରେତ ନେତାମାନେଇ ସର୍ବବ୍ୟାପୀ, ସର୍ବଗକାର । ଯୋଉଠି ଦେଖ ନେତା । ସହରର ବୁଲ୍ କୁଉ ଭଳି ଯୁଆଡ଼େ ଆଖି ପକାଇଲେ ବି ଚାରିଗଣ୍ଡା ନେତା ମିଳିଯିବେ । ନେତାଙ୍କ ସଂଖ୍ୟା ଏତେ ବଢ଼ିଗଲଣି ଯେ ସାଧାରଣ ଭୂମି ପୂଜା ହେଉ କି ଉନ୍ମୋଚନ, ଉଦ୍‌ଘାଟନ ଉତ୍ସବ ହେଉ ଚାରି ଛ' ଜଣ ନେତା ଚାମଚା-ବେଲଚାଙ୍କ ସହିତ ଟହଲ ମାରୁଥିବେ । ଏଭଳିକି ଥରେ ପାଇଖାନା (ସୁଲଭ ଶୌଚାଳୟ) ଉଦ୍‌ଘାଟନ ପାଇଁ ଆଠ-ଦଶଜଣ ନେତା ମନ୍ତ୍ରୀ ଏକତ୍ରୀତ ହୋଇ-ଥିବାର ନଜୀର ରହିଛି ।

ନେତା ଶବ୍ଦର ଅର୍ଥ ଖୁବ୍ ବ୍ୟାପକ । ନେ-ଏ-ତା… । ଅର୍ଥାତ୍ ନେଇ ନେଇ ନେତା । ସେମାନେ କେବଳ ନେଇ ଜାଣନ୍ତି । ଦେଇ ଜାଣନ୍ତିନି । ଯାହା କିଛି ଦିଅନ୍ତି ତାହା କେବଳ ଶୁଖିଲା ସହାନୁଭୂତି, ମିଠା ପ୍ରତିଶ୍ରୁତି । ନା ସେଥିରେ ପେଟପୂରେ ନା ମନ ମାନେ ? ଇଂରାଜୀରେ ନେତାଙ୍କୁ LEADER (ଲିଡ଼ର) କହନ୍ତି । ତହିଁର ଅର୍ଥ ଲୟାର (ମିଛୁଆ), ଏକ୍‌ସଚେଞ୍ଜର (ଅଦଳ ବଦଳକାରୀ), ଏଡ଼ାମେଣ୍ଟ (ଜିଦ୍‌ଖୋର), ଡେଷ୍ଟ୍ରୋୟାର (ଧ୍ୱଂସକାରୀ), ଇଗୋ (ଫୁଟାଣିଆ), ରଷ୍ଟିକ୍, ଗଓଡ଼ି, ରସ୍‌କେଲ (ପାଜି, ବଦ୍‌ମାସ) । ଆଜି ଆପଣ-ମାନଙ୍କୁ ନେତାମାନଙ୍କର ସ୍ୱରୂପ, ଶ୍ରେଣୀ ବିଭାଗ ସଂପର୍କରେ ଅବଗତ କରଉଛି । କାର୍ଯ୍ୟପ୍ରଣାଳୀ, ଚରିତ୍ର, ସେବା, ତ୍ୟାଗ, ନିଷ୍ଠାର ବିଶ୍ଳେଷଣରୁ ଜଣାଯାଏ ଯେ ଅନେକ କିସମର ନେତା ଅଛନ୍ତି । ଏକ ଅନୁସନ୍ଧାନ ଅନୁସାରେ ସମଗ୍ର ବିଶ୍ୱରେ ଯେତେ କିସମର ନେତା ଅଛନ୍ତି, କେବଳ ଭାରତୀୟ ଗଣତନ୍ତ୍ରରେ ସେମାନଙ୍କଠୁ ଦଶଗୁଣା ନେତା ଦେଖାଯାଆନ୍ତି । କାରଣ ଭାରତୀୟ ଜଳବାୟୁରେ ଭଲ ନେତା ଫଳନ୍ତି ବୋଲି ଗବେଷକମାନେ ପରୀକ୍ଷା କରି ଜାଣିଛନ୍ତି ।

ଭାରତରେ ନେତାମାନେ ଯେଉଁ ସୁଖ, ସୁବିଧା ପାଆନ୍ତି, ଅନ୍ୟ କେହି କୋଉଠି ପାଆନ୍ତିନି । ସେଇଥିପାଇଁତ ଏବେ ସମସ୍ତେ ନେତା ହେବାକୁ

ହମହମ ହୁଅନ୍ତି । ପାରିବାରିକ ନେତାଗିରି ବେଶୀ ପରିମାଣରେ ଭରତରେ ଦେଖାଯାଏ । ବଂଶାନୁକ୍ରମିକ ଶାସନର ଅନେକ ପ୍ରମାଣ ଏଠାରେ ମିଳେ । ନେତୃତ୍ୱକୁ ପୈତୃକ ସଂପତ୍ତି ପରି ଜାବୋଡ଼ି ଧରିବାକୁ ପ୍ରବଳ ପ୍ରତିଯୋଗୀତା ଚ୍ଲେ । ଏଭଳିକି ଗୋଟିଏ ପରିବାରର ବାପ, ମାଆ, ପୁଅ, ଝିଅ, ନାତି, ପଣନାତି ସମସ୍ତେ ଭିନ୍ନ ଭିନ୍ନ ଦଳର ନେତା ହୋଇ ଫାଇଦା ହାସଲ କରିବାକୁ ଆଗେଇ ଆସନ୍ତି । ଯୋଉ ଦଳ କ୍ଷମତାକୁ ଆସୁ ପରଓ୍ୱା ନାହିଁ ।

ନେତାମାନେ ଜନଗଣର ପ୍ରତିନିଧି । ଯେ କୌଣସି କାମରେ ନେତା ଥାଆନ୍ତି ଆଗରେ । ତାଙ୍କ ପଛରେ ସାଧାରଣ ଜନତା । ଦାବୀ ପୂରଣ ସକାଶେ ଆନ୍ଦୋଳନ ହେଉ, ଅନଶନ ହେଉ, ର୍ୟାଲି ହେଉ, ସବୁଠି ନେତା । ସେମାନେ ଆଗକୁହା, ଆଗଚଲା, ପର ଗାଈଦୁହାଁ (ଏବେ ପରମାଈ ଦୁହା) ବଇଠା ପେଲା । ଅତି ଚତୁର, କୌଶଳୀ, ସ୍ୱାର୍ଥ ସର୍ବସ୍ୱ । ଯେମିତି ହେଉ ଲୋକଙ୍କୁ ମତେଇ ଭୁତେଇ ନିଜର ଫାଇଦା ହାସଲ କରିବାର କାଇଦା ସେମାନଙ୍କୁ ବେଶ୍ ଜଣା । କାଦୁଅକୁ ଓଦ୍ଧାଇବେ ନାହିଁ କି ଗୋଡ଼ ଧୋଇବେ ନାହିଁ । ଅଯଥାରେ ହଇରଣ, ହରକତ ହେବାକୁ ସେମାନେ ପସନ୍ଦ କରନ୍ତି ନାହିଁ । ଦରକାର ହେଲେ ନିରୀହ ସାଧାରଣ ଲୋକଙ୍କୁ ବିପଦ ମୁହଁକୁ ଠେଲି-ଦେଇ ନେତାମାନେ ରଙ୍ଗ ଦେଖିବାକୁ ଭଲପାଆନ୍ତି । ଦେଶସେବା, ଜନମଙ୍ଗଳ ନାମରେ ସେମାନେ ନିଜର, ନିଜ ଲୋକଙ୍କର କଲ୍ୟାଣ ହିଁ କରିଥାନ୍ତି । ସବୁରି ଖାଆନ୍ତି କିନ୍ତୁ କାହାରି ନୁହଁନ୍ତି । ପ୍ରବଳ ଭବରେ ଆତ୍ମକୈନ୍ଦ୍ରିକ । "ଆତ୍ମ କୁଶଳେ ସର୍ବସିଦ୍ଧି, ଆପେ ବଞ୍ଚିଲେ ବାପର ନାମ" ସେମାନଙ୍କର ଭିତିରି ନୀତି । ଅନ୍ୟ କଥା ବୁଝିବାକୁ, ଅନ୍ୟର ଦୁଃଖ ଶୁଣିବାକୁ ତାଙ୍କର ବେଳ କାହିଁ ? ସେମାନେ ସୁଖରେ ରହିଲେ ସିନା ସମସ୍ତଙ୍କୁ ସୁଖୀ କରଇ ପାରିବେ ? ତଥାପି ସବୁ ଆଙ୍ଗୁଳି ସମାନ ନହେବା ପରି ସବୁ ନେତା ସମାନ ନୁହଁନ୍ତି । ସେମାନଙ୍କ ମଧ୍ୟରେ ବି ବ୍ୟତିକ୍ରମ ଅଛି । ମାତ୍ର ଆଜିକାଲି ସେମାନଙ୍କର କାଟ୍ତି କମ୍ ।

ଆଜ୍ଞା ; ଶାଢ଼ୀ ଯେମିତି ମଣିପୁରୀ, ମାଣିଆବନ୍ଧୀ, ସମ୍ବଲପୁରୀ, ଭଗଲପୁରୀ, ତନ୍ତୁଶ୍ରୀ, ରେଲେକ୍ସ, ହାଏତଏସ, ବନାରସୀ, କାଞ୍ଚିପୁରୀ, କ୍ରିମସିଲ୍କ୍, ଯାଉଥ କଟନ୍, ଇଡ଼େନ୍ ଗାର୍ଡେନ, ମୈନେ ପ୍ୟାର କିୟା, ଝୁମା ଚୁମା, ପରଗ, ଚିରଗ୍, ମାଧୁରୀ ଅର୍ଚ୍ଚନା, ରଚନା, ଦାଢ଼ୀ ଯେମିତି ଗହଳିଆ, ବହଳିଆ, ଅାଦପତଳା, ଫ୍ରେଞ୍ଚ୍‌କଟ୍, ବର୍କିକଟ୍, ଲମ୍ବା, ବାଆଜିଆ, ସନ୍ତାସ ବାଦିଆ, ଠିକ୍ ସେଇଭଳି ଅନେକ କିସମର ନେତା ଅଛନ୍ତି । ଆନ୍ତର୍ଜାତୀୟ, ରାଷ୍ଟ୍ରୀୟ, ପ୍ରାଦେଶିକ, ଜିଲ୍ଲାସ୍ତରୀୟ, ବ୍ଲକସ୍ତରୀୟ, ହାଇକମାଣ୍ଡ, ହାଁଜୀ, ହଁଜୀ, କୁଜୀ, ପାଜି,

ଦାଦାଜୀ, ମାତାଜୀ, ଗୁଣ୍ଡାଜୀ, ଷଣ୍ଢଜୀ, ଭଣ୍ଡଜୀ, ଧଣ୍ଡଜୀ, ପାଷଣ୍ଡଜୀ, କୁଅଁଟେକା, ହାତଟେକା, ସନ୍ତ୍ରାସବାଦୀ, ଆନ୍ଦୋଳନଜୀବୀ, ନକ୍‌ସାଲପନ୍ଥୀ, କ୍ଷମତାଲୋଭୀ, ଦେଶପ୍ରେମୀ, ଚରଣଚଟିଆ, ଗାଲୁଆ, ମାଡ଼ୁଆ, ଭାଲୁଆ, ଟାଣୁଆ, ବାଣୁଆ, କୁଟୁରୁପେଞ୍ଚିଆ, ତୁରକା, ମାର୍କାମରା, ବାଇଝାଲିଆ, ଗ୍ରମରା, ବେଲରା, ଖଇରା, ପନ୍ଥବୁଦ୍ଧିଆ, ଆଗଚଲା, ପଛପେଲା, ଗମ୍ଭୀର, କୁମ୍ଭୀର, ହସକୁରା, ଦାନ୍ତନିକୁଟା, ଶୁଙ୍କୁଟା, ଅନ୍ତଲପେଟା, ଦନ୍ତଛଡ଼ା, କାମୁଡ଼ା, ଧୋତିବାଲା, କୁର୍ତ୍ତା ପାଇଜାମା-ବାଲା, ବାଆଜୀ ଚେଲା ହୃଦୟ ଖୋଲା, ପକେଟମେଲା, ଆଦି ଅନେକ ପ୍ରକାରର ନେତା ଅଛନ୍ତି । କେତେକ ବ୍ୟତିକ୍ରମିଆଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ଏକା ଗାଈର ଗୋବର । ନରୋତ୍ତମ ଦାସଙ୍କ ବୋଲିରେ "ସବ୍ ଶାଲେ...।"

ଯାଦୁ, କୁଣ୍ଡିଆ, ଗଲୁ, ମଚଳା, ଚମଦଳା ଭଳି ନେତାମାନଙ୍କ ମଧ୍ୟରେ ସ୍ଥାୟୀ, ଅସ୍ଥାୟୀ, କାମଚଳା ଥାଆନ୍ତି । ନେତା ହେବା ପାଇଁ ନା ପାଠ ଦରକାର ନା ନିର୍ଦ୍ଦିଷ୍ଟ ଶିକ୍ଷାଗତ ଯୋଗ୍ୟତା ଦରକାର ? ଅପଢ଼ା ପାଠର କରାମତି ଦେଖାଇ ବାଜିମାତ୍ କରିବା ନେତାମାନଙ୍କର ସବିଶେଷ ଗୁଣ । ସେମାନଙ୍କ ମହିମା ଅପରଂପାର । ଭାଷାରେ ବ୍ୟକ୍ତ କରିବା ସମ୍ଭବ ନୁହେ ।

ନେତାମାନଙ୍କ ମଧ୍ୟରେ ଅଧେ ସରକାରୀ ଓ ଅଧେ ବିରୋଧୀ ଦଳିଆ । ଅଧେ ଏ ଦଳ ନୁହଁନ୍ତି କି ସେଦଳ ନୁହଁନ୍ତି । ମଝିରେ ଥାଇ ସୁଯୋଗ ଉଣ୍ଡୁଥାନ୍ତି । ଫାଇଦା ଯୁଆଡ଼େ ଢଳିପଡ଼ନ୍ତି ସେଆଡ଼େ । ଏମାନେ ସ୍ୱାଧୀନ ଭାବରେ ନିର୍ବାଚନ ଲଢ଼ି ବାଇଗ୍ରନ୍‌ସ ଜିତିଗଲେ ମାଲମାଲ ହୋଇଯାଆନ୍ତି । ସରକାର ଟଳି ପଡୁଥିବା ବେଳେ ଏମାନେ ସମର୍ଥନ ଜଣାଇ କୋଟି କୋଟି ହାତେଇ ନିଅନ୍ତି । ନିର୍ବାଚନରେ ଯେତିକି ଖର୍ଚ୍ଚ କରିଥାନ୍ତି ତାର ଶହେଗୁଣ ଆଦାୟ କରିନିଅନ୍ତି । ବେଳେବେଳେ ଏମାନଙ୍କର ଭାଉ ଖୁବ୍ ବଢ଼ିଯାଏ । ଏମାନଙ୍କୁ ଘୋଡ଼ାମୁହାଁ ନେତା କୁହାଗଲେ କ୍ଷତିହେବ ନାହିଁ ।



# ନେତା ବନାମ କୁତ୍ତା ଏବଂ ଭଗବାନ

"ନେତା ବନାମ କୁତ୍ତ ଏବଂ ଭଗବାନ", ଏଇ ଶୀର୍ଷକ ଦେଖି ଅନେକଙ୍କର ଖଗ ସିଧା ସରପଟ୍ ପଞ୍ଚମକୁ ଉଠିଯାଇପାରେ । ବିଶେଷ କରି ଆଜିକାଲିକା ନେତା ଏବଂ ଏକନିଷ୍ଠ ଈଶ୍ୱରଭକ୍ତମାନେ ବାଜିବାଜି ବଜେଇ ବଜେଇ ବେକରେ ଢୋଲ ଗଳେଇ ଦେହରେ ରମାନନ୍ଦୀ ଚଦର ପକେଇ ବୁଲୁଥିବା ଧର୍ମଧ୍ୱଜାଧାରୀ "ବାଆଜୀ" ପ୍ରକୃତିଆ ଲୋକଙ୍କ ମୁଣ୍ଡକୁ ପିତ୍ତ ଚଢ଼ି-ଯାଇପାରେ । ମୋ ଚଉଦ ପୁରୁଷଙ୍କୁ ବିଶୁଦ୍ଧ ଦୋନଘଣ୍ଟି ସଂସ୍କୃତ ଶ୍ଲୋକ ପଢ଼ି ପିଣ୍ଡ ଦେବାକୁ ଆଗେଇ ଆସି ପାରନ୍ତି । ଅବା କେହି ସନ୍ତ୍ରାସବାଦିଆ ମୋ ଉପରକୁ ହ୍ୟାଣ୍ଡ୍‌ବମ୍ ଫିଙ୍ଗି ଦେଇପାରେ । କିହୋ ? ନେତା ଜାଗାରେ ନେତା, କୁତ୍ତ ଜାଗାରେ କୁତ୍ତ । ନେତା କ'ଣ କୁତ୍ତ ହୋଇ ପାରିବେ ନା କୁତ୍ତ ଶତଚେଷ୍ଟା କଲେ ବି ନେତା ସାଜି ପାରିବେ ? ଜନତାର ସେବକ, ଭାଗ୍ୟ ବିଧାତା ହୋଇ ପାରିବେ ? ତାହେଲା ନେତା ଆଉ କୁତ୍ତଙ୍କ ମଝିରେ ଭଗବାନ କୋଉଠୁ ଗଳି ପଡ଼ିଲେ ? ଛି ଛି ଛି, କି ଅଲଜୁକିଆ କଥା ? ଭଗବାନଙ୍କ ସହିତ ପୁଣି ନେତା ଆଉ କୁତ୍ତଙ୍କର ତୁଳନା ? ରାମ୍ ରାମ୍ ରାମ୍ । ଧର୍ମ ସହିବଟି ? ଭଗବାନ ଅସନ୍ତୁଷ୍ଟ ହେବେନି ? ମୁର୍ଦ୍ଧନା ଫାଟି ଦିଫାଳ ହୋଇ ଯିବନି ? କେଡ଼େ ହାରାମଜାଦା ପାଜି ବଦମାସ୍ ଲେଖକଟାଏ ମ ? କଲମ ଧରିଛି ବୋଲି ଯାଚ୍ଛାତା ଲେଖି ପକାଇବ ? ସେ ଆଉ କ'ଣ ଭାବିଛିକି ? ସଲମାନ୍ ରୁଷିଦୀ ଭଳି ତା ବିରୁଦ୍ଧରେ ଫତୁଆ ଜାରି କରି ଶଳାକୁ ହଲପଟା କରିବାକୁ ହେବ ।

ସୁଧୀ ପାଠକ ପାଠିକାଏ, ନେତା ମନ୍ତ୍ରୀଏ, ଧାର୍ମିକ ନେତା, ମୋଲ୍ଲା, ମୌଲବୀ, ଟିକାଚନ୍ଦନଧାରୀ ବାଆଜୀ ସାଆନ୍ତେ, ଗାଁଠାରୁ ସହରଯାଏ ପଇଁତରା ମାରୁଥିବା ଯେତେ ପୋଷା, ଘରପଶା ଏବଂ ବୁଲା କୁତ୍ତମାନେ, ହେ ପ୍ରଭୁ ମଙ୍ଗଳକାଙ୍କ୍ଷୀ ରାମଲଲ୍ଲା, ହେ ନଟନାଗର ରସିକ ଶେଖର କୃଷ୍ଣଚନ୍ଦ୍ର, ହେ ଆଲ୍ଲାତାଲା ଖୋଦା, ହେ ଈଶ୍ୱର ପୁତ୍ର ଯୀଶୁ, ହେ ଜଗତର ନାଥ ଶ୍ରୀଜଗନ୍ନାଥ । ସତ କହୁଛି, ରାଣ ଖାଉଛି, ମୁଁ ଯାହା ଦେଖୁଛି, ଅନୁଭବ କରିଛି ତାହାହିଁ

ଲେଖୁଛି । ମୋତେ କେହି ଶିଖାଇନି କି ନେତା; ଭଗବାନଙ୍କ ବିରୁଦ୍ଧରେ ଲେଖୁବାକୁ ଲାଞ୍ଚ, ଧମକ ଦେଇନି ।

ମୋର ଏକାନ୍ତ ଅନୁରୋଧ, ଥରେ ପଢ଼ନ୍ତୁ । ବିଚାର କରନ୍ତୁ । ତାପରେ ମୋତେ ଫାଶୀରେ ଝୁଲାନ୍ତୁ ବା ଜେଲରେ ଘଣା ପେଲାନ୍ତୁ । ପ୍ରଥମେ ନେତାଙ୍କ କଥା ତର୍ଜମା କରିବା । କାରଣ ଆଜିକାଲି ଯୁଗରେ ସେମାନେ ଅଖଣ୍ଡ ପ୍ରତାପଶାଳୀ, ଜୀଅନ୍ତା ଠାକୁର ସଦୃଶ । ଜନଗଣର ମା ବାପ । ସେମାନେ କେବଳ ନେଇ ଜାଣନ୍ତି, ଦେଇ ଜାଣନ୍ତିନି । ମିଠାକଥା କହି, ପଟେଇ ପାଟେଇ, ମତେଇ ଭୁତେଇ, କଳେବର ନୋଟ ଧରେଇ, ମଦ ହାଣ୍ଡିଆ ପିଆଇ ଅଥବା ବନ୍ଧୁକ ମୂନରେ ଉଠ୍‌ବସ୍ କରେଇ, ଲାଠି ଦେଖାଇ ଭୋଟ ନିଅନ୍ତି । ଦଳ ବଦଳ, ଲବି ମାଧ୍ୟମରେ ଥରେ କ୍ଷମତା ପାଇଗଲେ ଚଉକିରେ ବସି ନିଶ ମୋଡ଼ନ୍ତି । ମଦ ବିରିଆନି ଖାଇ ପେଟ ଫୁଲାନ୍ତି । ତାପରେ ଷଣ୍ଢ ଟେକି, ହାତରେ ଗୁବୁକ୍ ଧରି ଗସ୍ତାକୁ ବାହାରି ପଡ଼ନ୍ତି ଗରିବ, ଅସହାୟଙ୍କ ପିଠିରୁ ଚମଡ଼ା ଉତାରି ନେବାକୁ । ନରୋତ୍ତମ ଦାସଙ୍କ କଥାନୁସାରେ 'ସବ୍ ଶାଲା ଚୋର, ଚୋହାଡ଼'' । ଚରଣ ଚୁଟିଆ । କେତେ ବିକଳ ହୋଇ ଚରଣ ଧରି ଭୋଟ ମାଗିବେ । କ୍ଷମତା ପାଇଲେ ତମ ଚୁଟି ଧରି ଘରୁ ବାହାର କରି ଦେବେ । ଦିନ ଦି' ପହରେ ବିଚ୍ ଗସ୍ତାରେ ତମ ଝିଅ ବୋହୂଙ୍କୁ ଧର୍ଷଣ କରି ଝାଡ଼ିଝୁଡ଼ି ହୋଇ ଚରିତ୍ରର ସଫେଇ ଦେବେ । ଆଇନ୍ କାନୁନ୍ ସବୁ ତାଙ୍କରି ହାତରେ । ଦେଶ ପଛେ ଋଣ ଭାରରେ ବୁଡ଼ିଯାଉ ତାଙ୍କର କ'ଣ ଯାଏ ଆସେ ? ତାଙ୍କ ନାମରେ, ତାଙ୍କ ପୁଅ ମାଇପ, ଶଳାଶାଳୀଙ୍କ ନାମରେ ବିଦେଶୀ ବ୍ୟାଙ୍କରେ ଆକାଉଣ୍ଟ ଖୋଲାଯିବ ହିଁ ଯିବ । ତାଙ୍କ ପୁଅ ଝିଅ ଭଲ ଇଂରାଜୀ ମିଡ଼ିୟମ ସ୍କୁଲରେ ପଢ଼ିବେ । ସାହେବ ମେମ୍ ହେବେ । ମାରୁତି ଚଢ଼ିବେ, ବୋଇଂରେ, ଉଡ଼ିବେ । ଚନ୍ଦ୍ରସ୍ୱାମୀ, କେଶବାନନ୍ଦ, ସନ୍ତୋଷାନନ୍ଦ, ପ୍ରେମାନନ୍ଦଙ୍କ ପରି କିଛି ବାଆଜିଆ ପ୍ରକୃତିର ସାଧୁ ମହାତ୍ମାମାନେ ନେତାଙ୍କୁ ଇଲମ ଦେଇ ତାଙ୍କରି ମାଧ୍ୟମରେ କୋଟି କୋଟି ଟଙ୍କାର ମାଲିକ ହେବେ । ବିଧବା, ଅସହାୟା ସ୍ୱାମୀ ପରିତ୍ୟକ୍ତା ମହିଳା, ଅନାଥିନୀ ସୁନ୍ଦରୀ ଯୁବତୀମାନଙ୍କ ପାଇଁ ଆଶ୍ରମ ଖୋଲି ସେଠି ଧର୍ଷଣ, ଗର୍ଭପାତର ନିତ୍ୟଲୀଳା ଚଳେଇବେ । ତମକୁ ପଚାରେ କିଏ ? ହ୍ୟାପ୍ ମଳି ମୁଣ୍ଡିଆ ନିପଟ ମୂର୍ଖ କୋଉଠିକାର ?

ଏବେ ଆସନ୍ତୁ କୁକୁରଙ୍କ ଚରିତ୍ର ବିଶ୍ଳେଷଣ କରିବା । ସେମାନେ ଭାରି ବିଶ୍ୱସ୍ତ । ଯାହାର ଖାଇବେ ତାଆରି ଗୁଣ ଗାଇବେ । ମାଲିକ ପାଇଁ ଶତ୍ରୁ ବେକରେ ଚଢ଼ି ରକ୍ତ ପିଇଯିବେ । ଏରୁଣ୍ଡି ଡେଇଁ ଘରେ ପଶିବେନି । ଆଜିକାଲିର

ଆଜି କାଲିତ କୁତ୍ତ କୁତୀମାନେ ଫ୍ଲାଟ୍‌ରେ ରହିଲେଣି, କାର ଚଢ଼ିଲେଣି, ପ୍ଲେନ୍‌ରେ ଉଡ଼ିଲେଣି । ମାଲିକଙ୍କ ସହିତ ମର୍ଣ୍ଣିଂଓ୍ୱାକ୍ କଲେଣି । ମାଲିକାଣୀ ଅବା ତାଙ୍କ ଝିଅଙ୍କ ସହିତ ପ୍ରେମ କଲେଣି । ତଥାପି ସେମାନେ ନିଜ ଚରିତ୍ରରୁ ବିଚ୍ୟୁତ ହୋଇ ନାହାଁନ୍ତି । ରୁଟି ଖଣ୍ଡେ କି ବିସ୍କୁଟଟେ ଦେଖେଇଲେ ପଛରେ ଗୋଡ଼େଇ ଥିବେ । ଲଞ୍ଜ ହଲେଇ ନସର ପସର ହେଉଥିବେ । ମାଲିକଙ୍କୁ ବିପଦରୁ ଉଦ୍ଧାର କରିବା ପାଇଁ ନିଜ ଜୀବନ ଦେଇଦେବେ । ବେଇମାନୀ କରିବେନି । ନେତା-ମାନେ ମଣିଷ ହୋଇ ମଣିଷର କଥା ବୁଝନ୍ତି ନାହିଁ । ନିଜର ପଶୁ ପ୍ରବୃତ୍ତି ମେଣ୍ଟାଇବା ପାଇଁ ମାନବିକତାକୁ ବଳି ଦିଅନ୍ତି । କୁତ୍ତ ପଶୁ ହେଲେବି ଦେବଦୂତ ଭଳି କାମ କରେ ।

ବାକି ରହିଲା ଭଗବାନଙ୍କ କଥା । ମାନେ GOD. ଏହାର ଅର୍ଥ GENERATION, OPERATION AND DESTRUCTION. ସୃଷ୍ଟି-ସ୍ଥିତି-ବିଲୟର ପ୍ରତୀକ । ସେ ଆଲ୍ଲା ହୁଅନ୍ତୁ, ଲାଲ ହୁଅନ୍ତୁ, ଯୀଶୁ ହୁଅନ୍ତୁ, ଜଗନ୍ନାଥ ହୁଅନ୍ତୁ, ବିଶ୍ୱନାଥ ହୁଅନ୍ତୁ କି ନୃସିଂହନାଥ ହୁଅନ୍ତୁ । ଅବା ମଙ୍ଗଳା, ଶାରଳା, ତାରିଣୀ, ଗୋଜବାୟାଣୀ ଦେବୀ ହୁଅନ୍ତୁ । ସମସ୍ତେ ଆଜି ଅସହାୟ । ସେମାନେ ନେତାଙ୍କ ହାତର କଣ୍ଢେଇ ସାଜିଛନ୍ତି । ନା ମନ୍ଦିରରେ, ନା ମସ୍‌ଜିଦ୍‌ରେ, ନା ଗୀର୍ଜାରେ ଅଛନ୍ତି ? ସେମାନଙ୍କ ପୀଠ ସବୁ ଅସାମାଜିକ, ସନ୍ତ୍ରାସବାଦୀ, ଗୁଣ୍ଡା, ବଦମାସ୍, ଭଣ୍ଡ, ପାଷଣ୍ଡ, ଲମ୍ପଟ ସନ୍ନ୍ୟାସୀ, ଲେଉ୍ତି ପୂଜକ, ଷଣ୍ଢମାର୍କା ନେତାଙ୍କ ଆଖଡ଼ା ସ୍ଥଳୀରେ ପରିଣତ ହୋଇଛି । ସେମାନଙ୍କର କାରସାଦି ଆଉ କାମ କରୁନାହିଁ । ନହେଲେ କି ମା' ଶାରଳାଙ୍କ ମନ୍ଦିର ସାମନାରେ ନିସ୍ପୃହା ଯୁବତୀ ଗଣଧର୍ଷିତା ହୋଇଥାନ୍ତା ? ଶିବ ମନ୍ଦିର ଭିତରେ ନବବଧୂର ଇଜ୍ଜତ ଭୂଲୁଣ୍ଠିତ ହୋଇଥାନ୍ତା ? ବିଭିନ୍ନ ମଠ, ମନ୍ଦିର, ମସ୍‌ଜିଦ୍ ଭିତରେ ହତ୍ୟା, ଜୁଆଗ୍ରେରି, ଧର୍ଷଣର ଲୀଳା ଚାଲନ୍ତା ? ନେତାମାନେ ମସ୍‌ଜିଦ୍ ଗଡ଼େଇ ମନ୍ଦିର, ମନ୍ଦିର ଗଡ଼େଇ ଗୀର୍ଜା କିମ୍ବା ଗୀର୍ଜା ଗଡ଼େଇ ଫାଇଭ୍‌ଷ୍ଟାର ହୋଟେଲ ତିଆରି କରନ୍ତେ ? ସେମାନଙ୍କର ଛାତି ଫାଟି ଯାଆନ୍ତାନି ? ରକ୍ତବାନ୍ତି କରି ମରନ୍ତେନି ? ଧର୍ମକୁ ନେଇ ପୁଣି ରାଜନୀତି କରନ୍ତେ ? କ୍ଷମତାର ପଶା ପାଲିରେ ଗୋଟି ଗଡ଼ାନ୍ତେ ?

ସବୁତ ଶୁଣିଲେ ଆଜ୍ଞା । ଏବେ ବିଚାର କରନ୍ତୁ । ନେତା, କୁତ୍ତ, ଭଗବାନଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ? କିଏ ମଣିଷର ସବୁଠାରୁ ବେଶୀ ଉପକାରୀ ??



# ପୋଷ୍ଟର ଯୁଦ୍ଧ ଓ ନେତାଙ୍କ ବିସ୍ଫୋରଣ

ଯୁଦ୍ଧତ ଯୁଦ୍ଧ, ପୁଣି ପୋଷ୍ଟର ଯୁଦ୍ଧ କ'ଣ ? ଏଇକଥା ଜାଣିବା ପାଇଁ ସବୁରି ପ୍ରାଣରେ ଉତ୍କଣ୍ଠା ଗଜୁରି ଉଠିବଣି । କିହୋ ? ବାପ ଗୋଷ୍ଟିଁପ ଅମଳରୁ ବାଦୀ-ପ୍ରତିବାଦୀଙ୍କ ମଧ୍ୟରେ ହାତାହାତି, ମୁଥ ମରମରି, ଟଣା-ଓଟରା, ଗଡ଼ାଗଡ଼ି, ପଡ଼ାପଡ଼ି, ଲତ ମରମରି, ଲଠିମରା, ଜୁସ୍ତାଭୂଷା, ଖଣ୍ଡାପେଲା, ତାର ମରମରି, ବାଟୁଳିମରା, ଢେଲା ଫିଙ୍ଗାଫିଙ୍ଗି, ମଲ୍ଲଯୁଦ୍ଧ, ଢିସୁମ୍ ଢାସୁମ୍, ଗୁଡ଼ୁମ ଗୁଡ଼ୁମ, କଥା ଶୁଣି ଆସିଥିଲେ । ଏବେ ଜୋଡ଼ୋ, କରଟେ ଚାଲିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆମେରିକା କ'ଣ ଗୋଟାଏ ଆସମାନରୁ ଫାଏକିନି ଗଳାଇ ପକାଇଲା ଯେ, ଜାପାନର ହିରୋସୀମା, ନାଗାସାକୀ ଭଳି ଦୁଇ ଦୁଇଟା ନଗର୍ଯ୍ୟ ଦେଖୁ ଦେଖୁ ଦୁଇଗଦା ପାଉଁଶରେ ପରିଣତ ହୋଇଗଲା । କୀଟ-ତରୁ-ଲତା, ପଶୁ-ମଣିଷ, କାହାରି ସତ୍ତା ରହିଲା ନାହିଁ । ସେଇଟା କାଳେ ଗୋଟାଏ ପରମାଣୁ ବୋମା । ଲୋକେ କାବା ହୋଇଗଲେ । ଯୁଦ୍ଧ ନିଶା ଛୁଟିଗଲା । ଆତ୍ମା ଥଣ୍ଡା ହୋଇ ବରଫ ପାଲଟି ଗଲା । କଲିଜା ପାଣି ଫାଟିଗଲା । ନେତା-ମାନେ ହାଉଳି ଖାଇଲେ । କବାଟକିଳା ଆଲୋଚନା ସମାଲୋଚନା ହେଲା । ଜାତିସଂଘଟିଏ ଗଢ଼ି ପକାଇ ଆଉ କେବେ ଯୁଦ୍ଧ କରିବାତ ଦୂରର କଥା ତାର ନାଁ ମୁଦ୍ଧା ଧରିବେ ନାହିଁ ବୋଲି ପ୍ରତିଜ୍ଞା କଲେ । ତଥାପି କ'ଣ ଯୁଦ୍ଧ ଭୟ ବିଭୀଷିକାରୁ ପୃଥିବୀ ମୁକ୍ତ ହୋଇଛି ? ଯା ଭିତରେ ଆହୁରି କେତେ ଯୁଦ୍ଧ ହୋଇ ଗଲଣି କିଏ ତାର ହିସାବ ରଖୁଛି ? କାମ୍ବୋଡ଼ିଆ ଯୁଦ୍ଧ, ଇରନ୍ ଇରାକ୍ ଯୁଦ୍ଧ, ଭାରତ-ପାକିସ୍ଥାନ ଯୁଦ୍ଧ, ବଙ୍ଗଳା ଦେଶ ଯୁଦ୍ଧ, ଉପସାଗରୀୟ ଯୁଦ୍ଧ ହୋଇ ଯାଇଛି । ଆଫଗାନି ସ୍ଥାନରେତ ଯୁଦ୍ଧ ବନ୍ଦ ହେବାର ନାଁ ଗନ୍ଧ ନାହିଁ । ତୃତୀୟ ବିଶ୍ୱଯୁଦ୍ଧ ପାଖେଇ ଆସୁଛି ବୋଲି ଭବିଷ୍ୟତ ବାଣୀ ଶୁଣାଗଲଣି । ହେଲେ ପୋଷ୍ଟର ଯୁଦ୍ଧ କ'ଣ ? ଏହା କିପରି ଲଢ଼ାଯାଏ ?

ପୋଷ୍ଟର ଯୁଦ୍ଧ ଏକ ଆଧୁନିକ କୌଶଳ । ଏଥିରେ ଗୋଳାବାରୁଦର ଗନ୍ଧ ନାହିଁ । ଲଠି ପ୍ରହାରର ପ୍ରଶ୍ନ ଉଠେନା । ଡିନାମାଇଟ୍ ଖଞ୍ଜିବାର

ଆବଶ୍ୟକତା ନଥାଏ । ଭଡ଼ାଟିଆ ଗୁଣ୍ଡା ଠିକ୍ କରିବାକୁ ପଡ଼େ ନାହିଁ । ଏହା ମହାତ୍ମା ବୁଡ଼ାର ସମ୍ପୂର୍ଣ୍ଣ ଅହିଂସା ମନ୍ତ୍ରପୁଷ୍ଟ ଅଭିନବ ଯୁଦ୍ଧ ।

ଏଥିପାଇଁ ରଙ୍ଗ, ତୂଳୀ, କାଗଜ, କନା, କାର୍ଡ଼ବୋର୍ଡ଼ ଦରକାର । କୁରୁକ୍ଷେତ୍ର ମୈଦାନ ଖୋଜିବା ଦରକାର ନାହିଁ । ଲୋକମାନଙ୍କର ଘର କାନ୍ଥ, ପାଚେରୀ, ଖମ୍ବ, ସରକାରୀ ପ୍ଲାଟ୍‌ଫର୍ମ ହେଲେ ବି ଚଳିବ । ପୋଷ୍ଟର ମାରି, ସ୍ଲୋଗାନ ଦେଇ, ଲୋକଙ୍କୁ ଚତେଇ ମତେଇ ସବୁକିଛି କରାଯାଇପାରେ । ନେତା ମାମଲତକାରମାନେ ଏଇ ପୋଷ୍ଟର ଯୁଦ୍ଧର ମୁଖ୍ୟ ନାୟକ । ଆଜିକାଲି ପୋଷ୍ଟର ମାଧ୍ୟମରେ ସବୁକିଛି ହୋଇ ପାରୁଛି । ଚଳଚ୍ଚିତ୍ର, ନୃତ୍ୟ-ସଙ୍ଗୀତ-ନାଟକର ପ୍ରଚାର, ନେତାଙ୍କ ଜନପ୍ରିୟତା ପ୍ରକାଶ, ଝିଅ ବୋହୂ, ଭଦ୍ରଲୋକଙ୍କ ଚରିତ୍ର ସଂହାର, ଦାବୀ ପୂରଣ, ଅଧିକାର ସାବ୍ୟସ୍ତ କରିବା, ନିର୍ବାଚନ ପ୍ରଚାର ଆଦି ସବୁ କ୍ଷେତ୍ରରେ ପୋଷ୍ଟର ମରମରି ଏତେ ବ୍ୟାପକ ହେଲା ଯେ ତା କବଳରୁ ନିସ୍ତାର ପାଇବା ମୁସ୍କିଲ ହୋଇ ପଡ଼ିଲା । ଗ୍ରାମପଞ୍ଚାୟତ ନିର୍ବାଚନ, କଲେଜ ଛାତ୍ର ସଂସଦ ନିର୍ବାଚନରେ ଶହଶହ ପୋଷ୍ଟର, କଟ୍‌ଆଉଟ୍ ଛାଇ ହୋଇ ପଡ଼ିଲା । ଯାହା ହେଉ ଏବେ ମାନ୍ୟବର ନିର୍ବାଚନ କମିଶନ କାନ୍ଥ ବାଡ଼ରେ ଲେଖିବା, ପୋଷ୍ଟର ମାରିବା ଉପରେ ନିଷେଧାଜ୍ଞା ଜାରି କରିଛନ୍ତି ।

କଥାରେ ଅଛି ଗୋଟାଏ ଯୁଦ୍ଧ ପରେ ଯେଉଁ ସନ୍ଧି ସ୍ୱାକ୍ଷରିତ ହୁଏ, ତାରି ଭିତରେ ଆଗାମୀ ଯୁଦ୍ଧ ପାଇଁ ଅଭିସନ୍ଧି ଲୁଚି ରହିଥାଏ । ଆଜିଯାଏ ସମଗ୍ର ବିଶ୍ୱରେ ଯେତେ ଆନ୍ଦୋଳନ, ହାଣକାଟ୍, ଯୁଦ୍ଧ ହୋଇଗଲାଣି ସବୁରି ମୂଳରେ ରହିଛି ଆମରି ଅତି ପ୍ରିୟ ନେତାମାନଙ୍କର କାରସାଦି । ସେମାନେ ହିଁ ସବୁ ଅନର୍ଥର ମୂଳ । ସେଇମାନଙ୍କ ପାଇଁ ତୃତୀୟ ବିଶ୍ୱଯୁଦ୍ଧ ଯେ ନିଶ୍ଚିତ ହେବ । ସୁନ୍ଦର ସୃଷ୍ଟି ଚରାଚର ଧ୍ୱଂସ ହେବ ଏଥିରେ ସନ୍ଦେହ ନାହିଁ । ଏଣୁ "ମୂଳୁ ମାରିଲେ ଯିବ ସରି" ନ୍ୟାୟରେ ନେତାମାନଙ୍କୁ ମୂଳପୋଛ କରାଯାଇ ପାରିଲେ ସବୁ ଅଡୁଆ ତୁଟି ଯାଆନ୍ତା । ଆଉ ଅଯଥା ଯୁଦ୍ଧ ଭୟ ରହନ୍ତା ନାହିଁ । ପୃଥିବୀ ନିଶ୍ଚିତ ଭାବରେ ଏକ ଆସନ୍ନ ବିଶ୍ୱଯୁଦ୍ଧର କରାଳ କବଳରୁ ରକ୍ଷାପାଇ ଯାଆନ୍ତା । ଧର୍ମକୁ ନେଇ ରାଜନୀତିର ପଶା ପାଳିରେ ଛୁରି ଗଡ଼ା ଯାଆନ୍ତା ନାହିଁ । ଆଲ୍ଲା-ରାମଲାଲଙ୍କ ମଧ୍ୟରେ ଲଢ଼େଇ ସୃଷ୍ଟି ହୁଅନ୍ତା ନାହିଁ । ନିର୍ବାଚନମାନଙ୍କରେ ବୁଥ ଦଖଲ, ପ୍ରାର୍ଥୀ ଅପହରଣ, ବୋମା ବିସ୍ଫୋରଣ, ହତ୍ୟାକାଣ୍ଡ ହୁଅନ୍ତା ନାହିଁ ।

ଯୁଦ୍ଧର କବଳରୁ ମାନବିକତାକୁ ରକ୍ଷା କରିବା ପାଇଁ ସାମ୍ପ୍ରଦାୟିକ ହିଂସାକାଣ୍ଡ ବଦଳରେ ସମାଜରେ ଶାନ୍ତି ପ୍ରତିଷ୍ଠା ପାଇଁ ସଦ୍‌ଭାବନା ଫେରାଇ ଆଣିବାର ଲକ୍ଷ୍ୟ ନେଇ ବହୁ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ପଦାର୍ଥ ବିଜ୍ଞାନୀ,

ଅଣୁବିଜ୍ଞାନୀ, ରସାୟନବିତ୍, ଶିକ୍ଷାବିତ୍, ବୁଦ୍ଧିଜୀବୀ, ନିର୍ଭିକ ସମ୍ପାଦକ, ସମାଜ ସଂସ୍କାରକମାନଙ୍କର ମିଳିତ ଗବେଷଣାର ଫଳ ସ୍ୱରୂପ ଏକ ଶକ୍ତିଶାଳୀ ବୋମା ତିଆରି କୌଶଳ ଆବିଷ୍କୃତ ହୋଇଛି । ଏହା ଅତ୍ୟାଧୁନିକ ପ୍ରଣାଳୀରେ ପ୍ରସ୍ତୁତ ଆଣବିକ ବୋମା, ରସାୟନିକ ଅସ୍ତ୍ର, ସ୍କଡ୍, ପାଟ୍ରିୟଟ୍ ଠାରୁ କୋଟିଏ ଗୁଣ ଶକ୍ତିଶାଳୀ । ଏହା ବିସ୍ଫୋରିତ ହେବା ମାତ୍ରେ କେବଳ ସ୍ୱାର୍ଥଲିପ୍ସୁ, ଦୁର୍ନୀତିଗ୍ରସ୍ତ, ଅତ୍ୟାଗ୍ରେଶୀ, କୂଟକପଟିଆ, କ୍ଷମତା ଲୋଭୀ, କାମାନ୍ଧ, ମଦାନ୍ଧ, ଲମ୍ପଟ, ଭଣ୍ଡ, ଅସାଧୁ ପ୍ରକୃତିର ନେତାମାନଙ୍କର ତତକ୍ଷଣାତ୍ ମୂର୍ଚ୍ଛନା ଫାଟି ମୃତ୍ୟୁ ହେବ । ଅବଶିଷ୍ଟ ମଣିଷ, ପ୍ରାଣୀ, ଉଦ୍ଭିଦ ଜଗତର କିଛି କ୍ଷତି ହେବ ନାହିଁ । ଏଣୁ ଏହାର ନାମ ନେତାବମ୍ ରଖାଯାଇଛି । ଏଥିରେ ଆନ୍ତର୍ଜାତିକ, ଜାତୀୟ, ପ୍ରାଦେଶିକ, ଜିଲ୍ଲାସ୍ତରୀୟ, ଗ୍ରାମାଞ୍ଚଳୀୟ, ହାଇକମାଣ୍ଡ, କୁଜାନେତା, ପାଜୀ, ଦାଦାଗୀ, ଗୁଣ୍ଡାଗୀ, ସବୁ ଧାର୍ମିକ ନେତା, ପ୍ରତିହିଂସା ପରାୟଣ ମୌଲବାଦୀ, ପାଦ୍ରୀ, ପୁରୋହିତ, ଲଣ୍ଡଭଣ୍ଡିଆ ସାଧୁ, ବାଆଜୀ, ଭଣ୍ଡ ଜ୍ୟୋତିଷମାନେ ମଧ୍ୟ ଧ୍ୱଂସ ହୋଇଯିବେ ।

ଭୟ କରିବାର କିଛି କାରଣ ନାହିଁ । ଜନସାଧାରଣଙ୍କର ଅତି ପ୍ରିୟ ସିନେମା, ଥିଏଟର ଅଭିନେତା, ଅଭିନେତ୍ରୀ, ନୃତ୍ୟ ସଙ୍ଗୀତ ଶିଳ୍ପୀ, ଦୂରଦର୍ଶନର ଉଦ୍‌ଘୋଷିକା, ଅଭିନେତା ଅଭିନେତ୍ରୀ ମାନଙ୍କର କିଛି କ୍ଷତି ହେବ ନାହିଁ । ନହେଲେ ଆପଣଙ୍କ ପୁତ୍ରକନ୍ୟାମାନେ ସିନେମା ହିରୋ ହିରୋଇନ୍‌ଙ୍କୁ ଅନୁକରଣ କରି ଫେସନ ସଜେଇବେ କିପରି ? ଜୁହୀ, ମାଧୁରୀ, ଉର୍ମିଳା ସାଜିବେ କିପରି ? ଅମୀର, ସଲମନ, ଶାହରୁଖ, ଚନ୍ଦ୍ରଚୂଡ଼ ହୋଇ ଝିଅଙ୍କ ପଛରେ ସିନେମା ଗୀତର ସୁସୁରି ବଜାଇ ନସର ପସର ହୋଇ କମେଣ୍ଟ ମାରି ଚପଲ ମାଡ଼ର ମଜା ଚାଖିବେ କିପରି ? ତଥାପି, ଯଦି କେହି ଅଭିନେତା ବା ଅଭିନେତ୍ରୀ ନୃତ୍ୟଶିଳ୍ପୀ ଆତ୍ମସ୍ୱାର୍ଥ ସାଧନ ପାଇଁ ହୀନ ରାଜନୀତିରେ ଅଂଶ ଗ୍ରହଣ କରନ୍ତି ଏବଂ ଭୋଟ ଲଢ଼େଇରେ ମାତନ୍ତି ସେମାନଙ୍କର ହାର୍ଟଫେଲ ଘଟିବାର ଆଶଙ୍କା ରହିଛି । ଯେଉଁମାନେ ଟି. ଭି ସିନେମାରେ ଅଶ୍ଳୀଳ, ନଗ୍ନ ନୃତ୍ୟ, ବିଜ୍ଞାପନ ପରିବେଷଣ କରିବେ, ଯେଉଁମାନେ ତାକୁ ଅନୁକରଣ କରିବେ ସେମାନଙ୍କର ଅଙ୍ଗହାନୀ ହୋଇପାରେ । ଏଣୁ ଏଇ ନେତାବମ୍ ପର୍ଯ୍ୟାପ୍ତ ପରିମାଣରେ ପ୍ରସ୍ତୁତ କରି ପୃଥିବୀର ବିଭିନ୍ନ ଦେଶର ଜନସାଧାରଣଙ୍କୁ ଯୋଗାଇ ଦିଆଯିବ ବୋଲି ନିଷ୍ପତ୍ତି ନିଆଯାଇଛି ।

ଏକ ସୂକ୍ଷ୍ମ ଗବେଷଣାରୁ ଜଣା ପଡ଼ିଛି ଯେ, "ନେତାଇଟିସ୍" ଏକ ସଂକ୍ରାମକ ବ୍ୟାଧି । ଏଥିରେ ଆକ୍ରାନ୍ତ ହେବା ମାତ୍ରେ ଲୋକ ନିଜକୁ ନେତା

ନେତା ଭାବେ । ତା ହୃଦୟରେ ହୀନତା ଗ୍ରନ୍ଥି ବା ଇନଫିରିୟର୍‌ଟି କମ୍ପ୍ଲେକ୍ସ ଦେଖାଦିଏ । ସେଥିରୁ ବିଷାକ୍ତ ପଦଲାଳସା ବା ଚୌକୀରସ କ୍ଷରିତ ହୁଏ । ଏହାର କୁପ୍ରଭାବରେ ଲୋକ ଈର୍ଷ୍ୟା ପରାୟଣ, ହିଂସ୍ର, ଚତୁର, ଲାଳସୀ, ଭ୍ରଷ୍ଟାଗ୍ରସ୍ତ, ଆତ୍ମ ପ୍ରତିଷ୍ଠା ପ୍ରିୟ, ଗ୍ରମଗ୍ର ଯୁକ୍ତ, ଭୋଟଭିକ୍ଷୁ, ନୋଟ ଲୋଭୀ ହେବା ସଙ୍ଗେ ସଙ୍ଗେ ବିଗ୍ରର ବୁଦ୍ଧି ହରାଇ ବସେ । "ହାଇପର ପୋର୍ଟଫଲିଓ ରସିଜିମ" ନାମକ ଏକ ସଂକ୍ରାମକ ଜୀବାଣୁ ତାଙ୍କୁ ଆକ୍ରମଣ କରେ । ବାଗ୍ମିତା ପ୍ରକାଶ ପାଏ । ଯେଉଁଠି ସେଇଠି ଭାଷଣ ଦେବା ଆରମ୍ଭ କରେ । ଲୋକ ନଥିଲେ ବସ, ଟ୍ରକ, ଅଟୋ, ଟ୍ରେକରରେ ଲୋକ ବୁହାଇ ଆଣି ରୁଣ୍ଡ କରାଇ ଜବର୍ଦ୍ଦସ୍ତ ଭାଷଣ ଦିଏ । ଜିନ୍ଦାବାଦ ଜୟଧ୍ୱନି ଦିଆ କରାଏ । ଶପଥ କରେ, ପ୍ରତିଶ୍ରୁତି ଦିଏ, ପଦଯାତ୍ରା କରେ, ବିବୃତି ଦିଏ, ଦଙ୍ଗା ଭିଆଏ, ସଦ୍‌ଭାବନା ସଭା କରେ, ଶାନ୍ତି କମିଟି ଗଠନ କରେ, ଚାନ୍ଦା ଆଦାୟ କରେ, କମିଶନ ନିଏ । ଭୋଟ ପାଇଁ ଚରଣ ଧରେ, ନୋଟ ଦିଏ । ବୁଥ ଦଖଲ କରେ । ପ୍ରତିଦ୍ୱନ୍ଦୀଙ୍କୁ ହତ୍ୟା କରେ । କଳେବଳେ କ୍ଷମତା ହାସଲ କରି କାହାକୁ ଖାତିର କରେନା । ମସ୍‌ଜିଦ ଗଡ଼ାଏ, ମନ୍ଦିର ଗଢ଼େ । ମନ୍ଦିର ଗଢ଼େଇ ଗାର୍ଜା ଗଢ଼େ । ବସ୍ତୀ ଉଜାଡ଼େ । ମଦ ଦୋକାନ ଖୋଲାଏ । ଦେଶ ପଛେ ରସାତଳକୁ ଯାଉ ସେ ନିଜର ସୁଖ ଦେଖେ ।

ମାତ୍ର ନେତାବମ୍ ବିସ୍ଫୋରିତ ହେଲେ ଆତ୍ମ ଜାଗରଣ ରୂପୀ ଏକ ରଶ୍ମୀ ବିଦ୍ୟୁତ ଚୁମ୍ବକୀୟ ତରଙ୍ଗ ଦେଇ ବିକୀରିତ ହେବ । ହୀନତା ଗ୍ରନ୍ଥି ଭସ୍ମ ହେବା ସହିତ ପୃଥିବୀ ଚେତାଶୂନ୍ୟ ହୋଇଯିବ । ରାଷ୍ଟ୍ର, ପ୍ରଜାତନ୍ତ୍ର, ସ୍ୱେଚ୍ଛାଚାର, ଗଣତନ୍ତ୍ର, ଅତ୍ୟାଚାର, ଭ୍ରଷ୍ଟାଚାର, ସାଂପ୍ରଦାୟିକତା, ମଠ, ମନ୍ଦିର, ମସ୍‌ଜିଦ, ଗୀର୍ଜା ରାମ, ରୁଟି, ଆଲ୍ଲା ତାଲ ରାଜନୀତି ଧ୍ୱଂସ ପାଇଯିବ । ଶାନ୍ତି, ମୈତ୍ରୀ, ପ୍ରେମ, ସୁଖ, ଶିକ୍ଷା, ସୃଜନୀ ଶକ୍ତିର ବିକାଶ ହେବ । ଏକ ନୂଆ ସଭ୍ୟତା ଗଢ଼ି ଉଠିବ । ଯୁଦ୍ଧର ସମ୍ଭାବନା ରହିବନି । ଲୋକେ କୌଣସି ବାଦର ଶିକାର ହେବେନି । ଜାତି-ଧର୍ମ-ବର୍ଣ୍ଣ-ବାଦ-ଭେଦ ବିହୀନ ନୂତନ ବିଶ୍ୱ ସୃଷ୍ଟି ହେବ । ମାନବିକତା ଉଜ୍ଜ୍ୱଳି ଉଠିବ ।



# ନିଶାମଣି ଓ ନିଶାନିବାରଣ

ଯେତେବେଳେ ନିଶାମୁକ୍ତ ସମ୍ପୂର୍ଣ୍ଣ ସୁସ୍ଥ ଭାରତ ଗଠନର ଆହ୍ୱାନ ଦିଆଗଲା, ସେତେବେଳେ ସମଗ୍ର ଦେଶର ଗଳିକନ୍ଦିରେ ନିଶାନିବାରଣ ପକ୍ଷ ପାଳିତ ହେଲା । ବିଭିନ୍ନ ସ୍ଥାନରେ ସଭା ସମିତି, କର୍ମଶାଳା, ଖୋଲା ମଞ୍ଚର ଆୟୋଜନ କରାଯାଇ ଜନ ସଚେତନତା ସୃଷ୍ଟି କରାଯାଉଥାଏ । ମନ୍ତ୍ରୀ, ନେତା, ବୁଦ୍ଧିଜୀବୀ, ପ୍ରଶାସନିକ ଅଧିକାରୀମାନେ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ନାମରେ ଶପଥ ନେଇ ଭାଷଣମାନ ଦେଉଥାନ୍ତି । ମାନ୍ୟବର ସ୍ୱାସ୍ଥ୍ୟମନ୍ତ୍ରୀ ଆମ ଅଞ୍ଚଳରେ ଜନ ସଚେତନତା ବୃଦ୍ଧି ଏବଂ ସମ୍ପୂର୍ଣ୍ଣ ନିଶା ନିବାରଣ ଯୋଜନାର ସଫଳ ରୂପାୟନ ପାଇଁ ସଦଳବଳେ ଏକ ସାତ ଦିନିଆଁ ଗସ୍ତରେ ଆସିଲେ । ତାଙ୍କ ସହିତ ବନ୍ଧୁ ପଦସ୍ଥ ସରକାରୀ ଅଫିସର, ତାଙ୍କ ଚେଲାଗମଣ୍ଡା ଆସିଲେ । ବିଭିନ୍ନ ସ୍ଥାନରେ ତୋରଣ ସଜାଇ, ମଞ୍ଚ କରାଯାଇ ସଭା ସମିତି ମାଧ୍ୟମରେ, ପଥପ୍ରାନ୍ତ ନାଟକ, ସଙ୍ଗୀତ, ତାମସା ଜରିଆରେ ଲୋକଙ୍କୁ ବୁଝାଗଲା ।

ଉଦ୍‌ଯାପନ ଦିବସଟି ମହାଯାକଯମକରେ ପାଳିତ ହେଲା । ମନ୍ତ୍ରୀ ଖଦଡ଼ ଧୋତି, ପଞ୍ଜାବୀ, ଗାନ୍ଧିଟୋପି ପିନ୍ଧି ବେକରେ ଓଜନିଆ ଫୁଲମାଳ ପକେଇ ଖୋଲା ଜିପ୍‌ରେ ଯୋଡ଼ହସ୍ତ ହୋଇ ଷଣ୍ଢ ଟେକି ଅଧା ଦାନ୍ତ ଦେଖା ମୁରୁକିଆ ହସ ଉକୁଟେଇ ବସ୍ତି ପରିକ୍ରମା କଲେ । ତାଙ୍କ ସହିତ ଯୋଗ ଦେଲେ ଆଖପାଖ ଦଶବାର ଖଣ୍ଡ ମୌଜାର ହଜାର ହଜାର ଜନସାଧାରଣ । ପଞ୍ଚାୟତ ସମିତି ନିକଟସ୍ଥ ବଡ଼ ପଡ଼ିଆରେ ଆୟୋଜିତ ବିରାଟ ଜନସଭାରେ ମନ୍ତ୍ରୀ ଭାଷଣ ଦେଲେ । ନିଶା ସେବନର କୁଫଳ, ନିଶାନିବାରଣ ଯୋଜନା ସମ୍ପର୍କରେ ଲୋକଙ୍କୁ ପ୍ରାଞ୍ଜଳ ଭାବରେ ବୁଝାଇଲେ । ମହାତ୍ମାଗାନ୍ଧୀଙ୍କ ନାମରେ ସମସ୍ତଙ୍କୁ ପ୍ରତିଜ୍ଞାବଦ୍ଧ କରାଇଲେ । ସଭାରେ ଉପସ୍ଥିତ ଯୁବକ ଯୁବତୀ ବୁଢା ଦାରବୁଢ଼ା ସମସ୍ତେ ତମ୍ବା ତୁଳସୀ ଛୁଇଁ ଶପଥ କଲେ ଜୀବନରେ କେହି ନିଶା ସେବନ କରିବେ ନାହିଁ । ନିଶାଦ୍ରବ୍ୟର ନାଁ ମଧ୍ୟ ଧରିବେନି । ଯେଉଁମାନେ ନିଶା ସେବନ କରୁଥିବେ ସେମାନଙ୍କୁ ବୁଝେଇ ବାରଣ କରିବେ । ମଦ

ଦୋକାନ ସବୁ ଉଠେଇ ଦେବା ପାଇଁ ଦରକାର ପଡ଼ିଲେ ଆନ୍ଦୋଳନ କରିବେ ।

ମନ୍ତୀ ନିର୍ଭର ପ୍ରତିଶ୍ରୁତି ଦେଲେ, "ମଦ ଦୋକାନ ବଦଳରେ ପ୍ରତି ଗାଁ ହକରେ ଜର୍ସିଗାଇ ଦୁଗ୍ଧ ବିକ୍ରୟ କେନ୍ଦ୍ର ଖୋଲଯିବ । ଯେଉଁମାନେ ଘୋଡ଼ା ମଦୁଆ ଅର୍ଥାତ୍ ମଦଘଡ଼ା ଧରି ବୁଲୁଥାନ୍ତି, ଭଟିରେ ଛବିଶ ଘଣ୍ଟା ପଇଁତରା ମାରନ୍ତି, ସେମାନଙ୍କୁ ମାଗଣାରେ ପ୍ରତିଦିନ ଏକ ଲିଟର ଲେଖାଏଁ ଖାଣ୍ଟି ଆଉଟା ଦୁଧ ଯୋଗାଇ ଦିଆଯିବ । ଏଥିପାଇଁ ସ୍ୱତନ୍ତ୍ର କାର୍ଡ଼ ବଣ୍ଟାଯିବ । ଗରିବ-ଅସହାୟ, ମହିଳା ତଥା ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର କୋଟା ରହିବ । ମହାତ୍ମା ଗାନ୍ଧୀଙ୍କର ଶ୍ୱେତ ବିପ୍ଲବ ଯୋଜନାକୁ କାର୍ଯ୍ୟକାରୀ କରଯିବ ।" ପ୍ରବଳ ହାତତାଳିରେ ଗଗନ ପବନ କମ୍ପିଲା । ଜିନ୍ଦାବାଦ୍ ଜୟଧ୍ୱନୀ ମଧ୍ୟରେ ଲୋକଙ୍କଠାରୁ ବିଦାୟ ନେଇ ମନ୍ତୀ ଯାଇ ପହଞ୍ଚିଲେ ସରକାରୀ ଡାକ ବଙ୍ଗଳାରେ ।

ଆଗରୁ ସେଠାରେ ସ୍ଥାନୀୟ ସରପଞ୍ଚ, ଯୁବକ ସଂଘର ସଭାପତି, ମନ୍ତ୍ରୀଙ୍କର କିଛି ନିଜ ଲୋକ, ଗ୍ରାମଗ୍ରା, ସମର୍ଥକ ଉପସ୍ଥିତ ଥିଲେ । ମନ୍ତ୍ରୀ ମହାଶୟ ଥରେ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କରି ନୀରବରେ ପଦଚାରଣ କରିବାକୁ ଲାଗିଲେ । ସମସ୍ତେ ପ୍ରମାଦ ଗଣିଲେ । କାରଣ ତାଙ୍କର ଏମିତି ଅବସ୍ଥା ଯେ ତାଙ୍କ ରାଗର ଚରମ ସୋପାନ ଏକଥା ଅନ୍ୟ କିଏ ଜାଣନ୍ତୁ ନ ଜାଣନ୍ତୁ ଯେଉଁମାନେ ତାଙ୍କର ନିକଟ ସମ୍ପର୍କରେ ଆସିଛନ୍ତି, ଅନ୍ତତଃ ସେଇ-ମାନେ ଭଲଭାବରେ ଜାଣିଛନ୍ତି । ମନ୍ତ୍ରୀଙ୍କ ସହାର ଦାୟିତ୍ୱରେ ଥିବା ସରପଞ୍ଚ କୁଞ୍ଜଟେକା ଦାସଙ୍କୁ ଗୋଟିଏ କଣକୁ ଡାକିନେଇ ମନ୍ତ୍ରୀଙ୍କ ପି. ଏ. ପଚାରିଲେ, "ଆଜ୍ଞା ! ମାଲ କାହିଁ ? ଚିକେନ୍ ବ୍ୟବସ୍ଥା ହୋଇଛି ? ଖାସୀ କଟା ଯାଇଛି ? ଛଇ...କୀ ଭରା ଯଉବନୀ ସୁନ୍ଦରୀ, ସୁକୁମାରୀ କେହି ଠିକ୍ ହୋଇଛି ?"

ଦାସେ ଆକାଶରୁ ଖସି ପଡ଼ିଲେ । ତାଙ୍କ ଅକଲ ଗୁଡ଼ୁମ । ସେ ଏ କ'ଣ ଶୁଣୁ...ନି ? ଏତେକଥା ହେଲା । ମନ୍ତ୍ରୀ ନିଜେ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ନାମ...ର ଶପଥ ନେଲେ । ଲୋକଙ୍କୁ ଏତେକରି ବୁଝାଇଲେ । ଅଥଚ...... ।" ତାଙ୍କ ହାବଭାବ ଦେଖି ପି: ଏ: ଭଲ ଭାବରେ ବୁଝାଇ ଦେଲେ । "ତମେ କ'ଣ ଜାଣିନାହିଁ, ମନ୍ତ୍ରୀଙ୍କ କଥା ପାଣିର ଗାର ? ସେ ଯାହା କହନ୍ତି କରନ୍ତି ତାର ଓଲଟା । ସଭାରେ ଭାଷଣ ଦେଲା ବେଳେ ମନ୍ତ୍ରୀ କୋଲ୍‌କେଗରୁ ଯାହା ପାନ କରୁଥିଲେ ତାହା ଫରେନ୍ ମାଲ । ଏବେ ତାଙ୍କ ମନ ଜଳୁଛି । ହୃଦୟର ତାତି ବଢ଼ିଯାଇଛି । ତାଙ୍କର ନିଶା ନିବାରଣ ଏବଂ ମନୋରଞ୍ଜନ ପାଇଁ

ସୁବ୍ୟବସ୍ଥା ନକଲେ ଅବସ୍ଥା କ'ଣ ହେବ ଭବି ପାରୁନ୍ତ ? ସବୁ ଗୋଳମାଳିଆ ଧରିଯିବ ।

ଦ୍ୱାସେ ସବୁ ବୁଝିଗଲେ । ମନ୍ତ୍ରୀ ନାରାଜ ହେଲେ ଆଗାମୀ ନିର୍ବାଚନରେ ତାଙ୍କୁ ଏମ. ଏଲ. ଏ. ଟିକେଟ ମିଳିବ ନାହିଁ । ଏଣୁ ଯେମିତି ହେଉ ମନ୍ତ୍ରୀଙ୍କୁ ଖୁସ୍ କରିବାକୁ ହେବ ; ନିଜର ଚେଲାମାନଙ୍କୁ ଧରି ସରପଞ୍ଚ କିଛି ସମୟ ଫୁସୁର ଫାସର ହେଲେ । ତାପରେ...... ।

ଜବାର ମିଆଁ ପାଖରୁ ସ୍ପେଶାଲ ମାଲ ଆସିଲା । ଭଡ଼ାଟିଆମାନେ ବହୁ କଷ୍ଟରେ ତଳସାହି ଝୋପଡ଼ି ପଡ଼ାରୁ କଞ୍ଚା ମାଂସର ଡଉଲଡାଉଲ ଛନଛନିଆଁ କଣ୍ଢେଇଟେ ଉଠାଇ ଆଣିଲେ । ମଦ ମାଂସର ସୁଅ ଛୁଟିଲା । ମନ୍ତ୍ରୀ ମସ୍ତ ହୋଇ କଣ୍ଢେଇଟିକୁ ଧରି ନିବୁଜ କୋଠରୀ ଭିତରେ ଅନେକ ସମୟ ଧରି ଖେଳିଲେ ତାଙ୍କର ନିଶା ସମ୍ପୂର୍ଣ୍ଣ ନିବାରିତ ହେବା ପର୍ଯ୍ୟନ୍ତ । ବେଳେ ବେଳେ କଣ୍ଢେଇଟି ଆକୁଳ ଚିତ୍କାର କରୁଥାଏ । ମାତ୍ର ତାର ଚିତ୍କାର ଡାକ ବଙ୍ଗଳାର ଚାରିକାନ୍ଥ ମଧ୍ୟରେ ପ୍ରତିଧ୍ୱନିତ ହେଉଥାଏ । ବାହାରକୁ ଶୁଭୁଥାଏ ତାଙ୍କ ଚେଲାଚାମୁଣ୍ଡାଙ୍କର ଅସଂଯତ କଥାବାର୍ତ୍ତା ଏବଂ ହାସ୍ୟରୋଳ ।

ରାତି ପାହିଲା । ନୂତନ ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ମାନ୍ୟବର ମନ୍ତ୍ରୀ ରାତିର ସବୁ ଘଟଣାକୁ ପାଶୋରି ଦେଇ ନିଜର ଦଳବଳ ସହିତ ରାଜଧାନୀ ଅଭିମୁଖେ ବାହାରିଗଲେ । ଡାକବଙ୍ଗଳା ଖାଲି ପଡ଼ିଲା । ଦିନ ବଢ଼ିଲା । ଲୋକଙ୍କ ଗହଳ ଚହଳ ଶୁଭିଲା । ଗାଁ ମୁଣ୍ଡ ପୋଖରୀରେ ବାଉରୀ ଜେନା ଝିଅ ନିଶାମଣିର ଶବ ଭାସୁଥିବାର ଦେଖାଗଲା । ସେ ପାପଗର୍ଭା ହୋଇ ଆତ୍ମହତ୍ୟା କରିଛି ବୋଲି ଚାରିଆଡ଼େ ପ୍ରଚାରିତ ହୋଇଗଲା । ନିଶା ନିବାରଣ ଯୋଜନାର ସଫଳ ରୂପାୟନ ପାଇଁ ନିଶାମଣି ଯେ ମନ୍ତ୍ରୀ ମହୋଦୟଙ୍କ ନିଶା ନିବାରିତ କରୁକରୁ ଚିରକାଳ ପାଇଁ ଅକାଳରେ ଝରିଗଲା, ଏକଥା କେବଳ ସରପଞ୍ଚ ଏବଂ ତାଙ୍କର ଭଡ଼ାଟିଆ ଗୁଣ୍ଡାଙ୍କ ମଧ୍ୟରେ ସୀମିତ ରହିଗଲା । ଡାକ ବଙ୍ଗଳାର ଚୌକିଦାର କିଛି ଟଙ୍କା ନେଇ ମୁହଁରେ କୋଲପ ପକାଇ ଚାବିକାଠି କୁଆଡ଼େ ଫୋପାଡ଼ି ଦେଲା ।



# ହରିଜନ କଲ୍ୟାଣ

ହରିଜନ ବସ୍ତିକୁ ପିଚୁରାସ୍ତା ତିଆରି ସରିବା ସଙ୍ଗେ ସଙ୍ଗେ ମାନ୍ୟବର କଲ୍ୟାଣ ମନ୍ତ୍ରୀ ଆସି ପ୍ରାଥମିକ ବିଦ୍ୟାଳୟର ଶୁଭ ଦେଲେ । କିଛିଦିନ ଆଗରୁ ଖୋଦ୍ ଶିକ୍ଷାମନ୍ତ୍ରୀ ଆସି ଅଙ୍ଗନୱାଡ଼ି କେନ୍ଦ୍ର ଉଦ୍‌ଘାଟନ କରିଥିଲେ । ବସ୍ତିର ଛୋଟ ଛୋଟ ପୁଅଝିଅମାନେ ଏଇ କେନ୍ଦ୍ରକୁ ଆସି ପାଠ ପଢ଼ୁଛନ୍ତି । କେତେ ରକମର ଖେଳ ଶିଖୁଛନ୍ତି । ବିସ୍କୁଟ, ଚକୋଲେଟ୍ ଗଜାମୁଗ, ଗୁଣ୍ଡଦୁଧ, ଗହମ କ୍ଷୀରି ଖାଉଛନ୍ତି । ହରିଜନ ଛାତ୍ରଛାତ୍ରୀମାନଙ୍କୁ ବିନା ମୂଲ୍ୟରେ ପୋଷାକ, ବହି ଖାତା ବଣ୍ଟାଯାଉଛି । ବସ୍ତିର ମୁଖିଆ ହରିଆ ଜେନା ଏସବୁ ଦେଖି କାବା ହୋଇଗଲା । ସେଦିନ ସରପଞ୍ଚ ବାବୁ ବୁଝାଇ ଦେଲେ । ତାଙ୍କ ବସ୍ତି ପ୍ରତି ସରକାରଙ୍କର ଶୁଭଦୃଷ୍ଟି ପଡ଼ିଛି । ଏଣିକି ସେମାନଙ୍କର ଭାଗ୍ୟ ଖୋଲିଯିବ । ଭୋକ ଓପାସରେ କେହି ରହିବେନି । ସରକାର ସବୁ ସୁବିଧା କରିଦେବେ । ଘର କରି ଦେବେ । ଟାଇଲ ଛପର ପକ୍‌କା ଘର । ନା ବଢ଼ିକୁ ଭୟ ନା ନିଆଁକୁ ଭୟ ? ଚାଷ କରିବାକୁ ଜମି ଦେବେ । ସାରଦେବେ, ବିହନଦେବେ, ପୋକମରା ଔଷଧ ଦେବେ । ସେମାନେ ସରକାରଙ୍କ ସୁନାପୁଅ । ସେମାନଙ୍କର ପ୍ରଗତି ନହେଲେ ଦେଶର ପ୍ରଗତି ହୋଇ ପାରିବନି । ସରକାର ସେମାନଙ୍କର କୌଣସି ଅଭାବ ଅସୁବିଧା ରଖିବେନି ।

ହରିଆ ଭାବିଲା ଯାହାହେଉ ଏତେଦିନକେ ସରକାର ସେମାନଙ୍କ ଦୁଃଖ ଶୁଣିଛନ୍ତି । ଗାନ୍ଧୀ ମହାତମାଙ୍କ କଥା ସତ ହୋଇଛି । ରାମରାଇଜ ନିଶ୍ଚେ ଥାପନା ହେବ । ଦେଶ ସ୍ୱାଧୀନ ହେବା ଠାରୁ ସେ ଏମିତିକା କଥା କେବେ ଶୁଣିନଥିଲା କି ସରକାର କିଏ, କି କାମ କରନ୍ତି ଜାଣିନଥିଲା । ପାଞ୍ଚ ବର୍ଷକୁ ଥରେ ତାଙ୍କ ବସ୍ତିବାଲା ଭୋଟ ଦେଉଥିଲେ । ନେତାମାନେ କେତେ କଥା କହୁଥିଲେ, ଭୋଟ ସରିବା ପରେ ସଭ ଚୁପଚାପ୍ । କେହି ଦେଖାଦେଉ ନଥିଲେ । କେହି ତାଙ୍କ କଥା ଶୁଣୁନଥିଲେ । ଏଥର ସରକାର ଠିକ୍ କାମ କରୁଛନ୍ତି । ଆଉ ଅଳ୍ପ ଦିନପରେ ପୁଣି ଭୋଟ ହେବ । ସରପଞ୍ଚ କହିଛନ୍ତି ତାଙ୍କ ଦଳକୁ ଭୋଟ ଦେଇ ଜିତାଇଲେ ଆହୁରି କେତେ କାମ କରିଦେବେ । ହରିଜନ ବସ୍ତିକୁ ସରଗପୁରୀ

ବନେଇଦେବେ । ଏଠି ପାର୍କ ହେବ, କ୍ଲବ ହେବ । ଆହୁରି ବଡ଼ ଇସ୍କୁଲ ହେବ । ତାଙ୍କ ପିଲାଏ ବେଶୀ ବେଶୀ ପାଠ ପଢ଼ି ବଡ଼ ହାକିମ ହେବେ । ଗତ ସନ ହରିଜନ ବସ୍ତିର ସବୁରି ଋଣ ସରକାର ଛାଡ଼ କରି ଦେଇଥିଲେ । ବସ୍ତିର ଦୁଇ ମୁଣ୍ଡରେ ଦୁଇଟି ନଳକୂପ ବସାଇ ଦେଇଛନ୍ତି । ପୋଖରୀରୁ ପଙ୍କ ଖୋଳି ଗାଧୁଆ ଘାଟ କରି ଦେଇଛନ୍ତି ପକ୍‌କାରେ ।

ବସ୍ତିଯାକ ଭୋଟଦେଲେ । ସୁବିଧାବାଦୀ ଦଳର ନେତା ସତ୍ୟବାଦୀ ବାବୁ ବିପୁଳ ଭୋଟରେ ଜିତି ରାଜ୍ୟର ଜନକଲ୍ୟାଣ ମନ୍ତ୍ରୀ ଭାବରେ ଶପଥ ନେଲେ । ବସ୍ତିକୁ ଆସି ସରପଞ୍ଚ ବାବୁ ବୁଝେଇ ଦେଲେ ଏଣିକି ପ୍ରଗତିର ସୁଅ ଛୁଟିବ । ଏ ସରକାର କଥାରେ ନୁହେଁ କାମରେ ବିଶ୍ୱାସ କରନ୍ତି । ହରିଜନ କଲ୍ୟାଣ ପାଇଁ ସବୁକିଛି କରିବେ । ମହାତ୍ମାଗାନ୍ଧୀଙ୍କ ସ୍ୱପ୍ନକୁ ସାକାର କରିବେ । ତାଙ୍କରି କଥା ସତ ହେଲା । ବସ୍ତିବାଲାଙ୍କୁ ସାର, ବିହନ, କଳ ଲଙ୍ଗଳ ଯୋଗାଇ ଦିଆଗଲା । ଯୁବକ ସଂଘ, ମହିଳା ସମିତି ଗଠିତ ହେଲା । ହରିଜନ ମହିଳାମାନଙ୍କୁ ପାଠ ପଢ଼ାଇବା ପାଇଁ ପ୍ରୌଢ଼ ଶିକ୍ଷାକେନ୍ଦ୍ର ସ୍ଥାପିତ ହେଲା । ସେମାନଙ୍କୁ ଲୁଗା, କପରଟି ଆଦି ମାଗଣାରେ ଯୋଗାଇ ଦିଆଗଲା । ହରିଆର ବୋହୂ ରତିନାଙ୍କୁ ମହିଳା ସମିତିର ସମ୍ପାଦିକା କରାଗଲା, ଝିଅ ରଙ୍ଗବତୀ ବସ୍ତିର ବୁଢ଼ା, ବୁଢ଼ୀଙ୍କୁ ପାଠ ପଢ଼ାଇଲା । ବହି, ସିଲଟ ଆଦି ସରକାର ଯୋଗାଇ ଦେଲେ । ନିରକ୍ଷର ହୋଇ କେହି ରହିବେନି । ସମସ୍ତେ ପାଠ ପଢ଼ି ଗ୍ରାମକ ଚତୁର ହେବେ । କେହି ସେମାନଙ୍କୁ ଠକିଦେଇ ପାରିବେନି । ହରିଆର ଆନନ୍ଦ କହିଲେ ନସରେ, ସବୁ କଥାରେ ହରିଆକୁ ଖୋଜା । ହରିଆ ନଥିଲେ ତା ଝିଅ କିମ୍ବା ବୋହୂଙ୍କୁ ଡାକି ସରପଞ୍ଚ ବାବୁ କେତେକଥା ବୁଝେଇ ଦେଇ ଯାଆନ୍ତି । ଏମିତି ସମୟ ଗଡ଼ିଗଲେ ।

ହଠାତ୍ ଦିନେ ଘୋଷଣା କରାଗଲା ଯେ ହରିଜନ ବସ୍ତିରେ ଏକ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରାଯିବ । ପାଖରେ ଚିକିତ୍ସା ସୁବିଧା ନଥିବାରୁ ଲୋକେ ହଇରାଣ ହୋଇ ନଦୀ ପାରି ହୋଇ ପାଞ୍ଚ କିଲୋମିଟର ଦୂରରେ ଥିବା ଡାକ୍ତରଖାନାକୁ ଯାଇ ଔଷଧ ଆଣୁଥିଲେ । ଏଣିକି ଆଉ ଦୂରକୁ ଯିବାକୁ ପଡ଼ିବ ନାହିଁ । ଲୋକେ ହାତପାହାନ୍ତାରେ ଚିକିତ୍ସା ସୁବିଧା ପାଇପାରିବେ । ଔଷଧ ବିନା କେହି ଆଉ ମରିବେ ନାହିଁ । କଲ୍ୟାଣ ମନ୍ତ୍ରୀ ଏହାର ଶୁଭ ଦେବେ । ସ୍ୱାସ୍ଥ୍ୟ ମନ୍ତ୍ରୀ ସଭାରେ ମୁଖ୍ୟ ବକ୍ତା ହେବେ । ବସ୍ତିବାଲା ଖୁସି ହୋଇଗଲେ । ବିରାଟ ସାଧାରଣ ସଭା ହେଲା । ମନ୍ତ୍ରୀ ଗାଁ ମୁଣ୍ଡରେ ଡାକ୍ତରଖାନାର ଭିତ୍ତିପ୍ରସ୍ତର ସ୍ଥାପନ କଲେ । ଲୋକଙ୍କୁ କେତେ କଥା ବୁଝାଇଲେ । ସଭା ସରିଲା । ମନ୍ତ୍ରୀମାନେ ପାଖ

ବସ୍ତି ଠାରୁ କିଛି ଦୂରରେ ଥିବା ପୂର୍ତ୍ତବିଭାଗ ଡାକବଙ୍ଗଳାକୁ ଗଲେ ରାତ୍ରିଯାପନ ପାଇଁ ।

ସରପଞ୍ଚ ବାବୁ ହରିଆ ଝିଅ ରଙ୍ଗ ଏବଂ ବୋହୂ ରତିନୀକୁ ଜିପ୍‌ରେ ବସାଇ ତାଙ୍କ ବଙ୍ଗଳାକୁ ନେଇଗଲେ । କାରଣ କଲ୍ୟାଣ ମନ୍ତ୍ରୀ ଏବଂ ସ୍ୱାସ୍ଥ୍ୟ ମନ୍ତ୍ରୀ ସେମାନଙ୍କ ସହିତ ହରିଜନ କଲ୍ୟାଣ ସମ୍ପର୍କରେ ଅଧିକ ଆଲୋଚନା କରିବାକୁ ଚାହାଁନ୍ତି । ସେମାନଙ୍କ ସୁବିଧା ଅସୁବିଧା କଥାବି ପଚାରି ବୁଝିପାରନ୍ତି । ହରିଆ ଖୁସି ମନରେ ଝିଅ ବୋହୂଙ୍କୁ ପଠାଇ ଦେଲା ! ସରକାରଙ୍କର ଶୁଭଦୃଷ୍ଟି ପଡ଼ିଛି ଯେତେବେଳେ ସବୁକିଛିର ଉନ୍ନତି ହେବ । ତାଛଡ଼ା ମନ୍ତ୍ରୀଙ୍କ ସାଙ୍ଗରେ କଥା କହିବା ପାଇଁ ତାଙ୍କ ବସ୍ତିରେ ଆଉ କେହି ନାହାଁନ୍ତି । ସେ ତ ନିଜେ ଗଣ୍ଡ ମୂର୍ଖଟେ । ପାଠର ଧୂଳିଗୁଣ୍ଡି ବାଜିନଥିଲା ତା ଦେହରେ । ଏବେ ବସ୍ତିରେ ପାଠପଢ଼ା ହେବାରୁ ଝିଅ ରଙ୍ଗ ତା ହାତ ଧରେଇ ଫଳା ଶିଖେଇ ଦେଲାଣି । ସେ ପଣିକିଆ ଶିଖିଲାଣି, ବହି ପଢ଼ିବାକୁ ଆରମ୍ଭ କଲାଣି ।

ସରପଞ୍ଚ କଲ୍ୟାଣମନ୍ତ୍ରୀଙ୍କ ପାଖରେ ରତିନୀକୁ ପହଞ୍ଚାଇ କହିଲେ, "ଆଜ୍ଞା ! ଯେ ଲୁପ ନେଇଛି, କିଛି ଅସୁବିଧା ହେବନାହିଁ । ମନ୍ତ୍ରୀ ଆଉ ଗୋଟାଏ ପେଗ୍ ଉଦରସ୍ଥ କରି ହସି ଉଠିଲେ ଏବଂ କହିଲେ "ଆସ ମିସେସ୍ ରତ୍ନମଣି । ଆମେ ହରିଜନ କଲ୍ୟାଣ ପାଇଁ ନୂଆ ଯୋଜନାର ଶୁଭଦେବା । ତମକୁ ସରକାରୀ ଖର୍ଚ୍ଚରେ ଫରେନ୍ ପଠାଇବାର ବ୍ୟବସ୍ଥା କରଯିବ ।"

ରତିନୀ ଆଶ୍ଚର୍ଯ୍ୟ ହେଲା । ଭୟରେ ଶିହରି ଉଠିଲା । ମନ୍ତ୍ରୀ ଟଳଟଳ ହୋଇ ତାକୁ ଆଲିଙ୍ଗନ କରିବା ପାଇଁ ଆଗେଇଲେ । ରତିନୀ ତାଙ୍କ ଗୋଡ଼ଧରି କେତେ ଆକୁଳରେ କହିଲା, "ଆପଣ ମନ୍ତ୍ରୀ, ଆମର ନେତା । ମାତୃ ଜାତିର ରକ୍ଷାକର୍ତ୍ତା । ମୁଁ ଆପଣଙ୍କର ଝିଅ ଭଳି । ମୋତେ ଛାଡ଼ି ଦିଅନ୍ତୁ । ଅଥଚ... । ପେଗ୍ ସନ୍ତାଡ଼ୁଥିବା ସରପଞ୍ଚ ବୁଝାଇ ଦେଲେ "ଆଲୋ ରତିନୀ, ଅବୁଝା ହ'ନା ! ତୁ ତ ଲୁପ ନେଇଛୁ । ଗର୍ଭ ହେବାର ଭୟ ନାହିଁ । ମନ୍ତ୍ରୀଙ୍କ ଦିଲ୍ ଖୁସ କରିଦେଲେ ତୋତେ ମାଲମାଲ କରିଦେବେ । ତମ ବସ୍ତି ସ୍ୱର୍ଗ ବନେଇ ଯିବ । ତମଘର ଆଗ ପକ୍କା କରି ଦିଆଯିବ । ଟି. ଭି. ରେଡ଼ିଓ ସେଟ୍ ଦିଆଯିବ । ତାଛଡ଼ା ମନ୍ତ୍ରୀ କହିଛନ୍ତି, ମୁଁ ଭୁବନେଶ୍ୱର ଗଲେ ତୋ ପାଇଁ ଭଲ ଦାମିକା ଶାଢ଼ୀ, ଗହଣା ପଠାଇ ଦେବେ । ତୋ ସ୍ୱାମୀକୁ ହୋମଗାର୍ଡ଼ ଚାକିରି ମଧ୍ୟ ଦିଆଯିବ ।

ସେତେବେଳକୁ ଅନ୍ୟ କୋଠରୀରୁ ସ୍ୱାସ୍ଥ୍ୟମନ୍ତ୍ରୀ ଏବଂ ରଙ୍ଗବତୀ ମଧ୍ୟରେ ଧସ୍ତାଧସ୍ତି ଆରମ୍ଭ ହୋଇଯାଇଥାଏ । ରତିନୀକୁ ମନ୍ତ୍ରୀ ଧରିବା ମାତ୍ରେ ସେ

ତାଙ୍କ ହାତକୁ କାମୁଡ଼ି ଦେଇ କବାଟ ଖୋଲି ଏକମୁହାଁ ଧାଇଁବାକୁ ଲଗିଲା । ପଛେ ପଛେ ସରପଞ୍ଚ ଏବଂ ତାଙ୍କର ଦି'ଜଣ ଚେଲା ସନ୍ଧାନୀ କୁକୁର ଭଳି ଖେଦି ଗଲେ । ଅନ୍ୟ କୋଠାଘରେ ମାନ୍ୟବର ମନ୍ତ୍ରୀ ମହୋଦୟ ରଙ୍ଗୀନ ନିଶାରେ ଚୁର୍ ହୋଇ ରଙ୍ଗବତୀର ସବୁରଙ୍ଗକୁ ନିଃଶେଷ କରିଦେଇଥାନ୍ତି । ମନ୍ତ୍ରୀଙ୍କ ପରେ ତାଙ୍କ ପାଖଲୋକମାନେ ଜଣକ ପରେ ଜଣେ ରଙ୍ଗ ହୋଳି ଖେଳିବା ଫଳରେ ସେ ଚଟାଣ ଉପରେ ନିଢ଼ାଳ ହୋଇ ପଡ଼ିଥାଏ । ତେଣେ ରତିନାକୁ ନପାଇ ସରପଞ୍ଚ ଓ ଚେଲାଏ ଫେରି ଆସିଲେ । ସବୁରି ଅକଲ ଗୁଡ଼ୁମ । ଏବେ ଉପାୟ କ'ଣ ? ମଗଜରୁ ବୁଦ୍ଧି ଛିଟିକି ପଡ଼ିଲା । ରଙ୍ଗବତୀକୁ ନେଇ ନଦୀରେ ପକାଇ ଦିଆଗଲା । ହରିଜନ ବସ୍ତିରେ ନିଆଁ ଲଗେଇ ଦିଆଗଲା । କ୍ଷଣକ ମଧ୍ୟରେ ସବୁ ଜଳିପୋଡ଼ି ଘରଖାର୍ ହୋଇଗଲା । ଲୋକେ ତହଳ ବିକଳ ହେଲେ ।

ରାତି ପାହିଲା, ସକାଳ ହେଲା । ପୋଲିସ ଆସିଲା, ହରିଆ ଏବଂ ତା ପୁଅକୁ ହାତକଡ଼ି ପିନ୍ଧାଇ ଥାନାକୁ ନିଆଗଲା । ସରପଞ୍ଚ କହିଲେ, "ହରିଆ ଏବଂ ତା ପୁଅ ବିରୋଧୀଦଳଙ୍କ ପ୍ରରୋଚନାରେ ଟଙ୍କା ଖାଇ ବସ୍ତିରେ ନିଆଁ ଲଗେଇ ଦେଇଛନ୍ତି । ବିଶୃଙ୍ଖଳ ରତିନା ମୂକ ପାଲଟି ଯାଇଥାଏ । ରଙ୍ଗବତୀ ନିଆଁରେ ପୋଡ଼ି ମରିଛି ବୋଲି ସମସ୍ତେ ଭାବିଲେ । ତେଣେ ଥାନାହାଜତରେ ହରିଆ ବସି ଭାବୁଥାଏ, "ଧନ୍ୟ ସରକାର । ଧନ୍ୟ ତାଙ୍କର ହରିଜନ କଲ୍ୟାଣ ।"

(ଏକ ପଡ଼ୋଶୀ ଭାଷାର ଗଳ୍ପର ଛାୟାରେ)



# ଅପରାଧ ନିୟନ୍ତ୍ରଣର ଅଭିନବ ଉପାୟ

ଆଜିର ଅତ୍ୟାଧୁନିକ ବିଜ୍ଞାନ ପ୍ରଯୁକ୍ତି ଯୁଗରେ ଏଭଳି କିଛି କାର୍ଯ୍ୟ ନାହିଁ ଯାହାକି ମଣିଷ ପକ୍ଷରେ ଅସମ୍ଭବ । ବୁଦ୍ଧି, ବିବେକ ବଳରେ ମଣିଷ ସବୁ ଅସମ୍ଭବକୁ ସମ୍ଭବ କରଇ ପାରୁଛି । ଆମେରିକାର ଅପରାଧ ବିଜ୍ଞାନୀମାନେ ବହୁ ପରୀକ୍ଷା ନିରୀକ୍ଷା ଗବେଷଣା କରି ଏକ ଯନ୍ତ୍ର ନିର୍ମାଣ କଲେ । ଏହାରି ମାଧ୍ୟମରେ ନାନା ପ୍ରକାର ଅପରାଧ ନିୟନ୍ତ୍ରଣ କରଯାଇ ପାରିବ ବୋଲି ବିଶେଷଜ୍ଞମାନେ ଦୃଢ଼ମତ ପୋଷଣ କଲେ । ଆମେରିକା ସରକାର ସେଇ ଯନ୍ତ୍ର ବସେଇ ଦେଶରୁ ଦୁର୍ନୀତି, ଅପରାଧର ମୂଳୋତ୍ପାଟନ ସକାଶେ ତୁରନ୍ତ ପଦକ୍ଷେପ ନେଲେ । ଯନ୍ତ୍ରର କାର୍ଯ୍ୟକାରିତା ଏବଂ ସଫଳତାର କାହାଣୀ ବିଜୁଳି ବେଗରେ ସମଗ୍ର ପୃଥିବୀରେ ବ୍ୟାପିଗଲା । ଅନ୍ୟ ଦେଶର ସରକାର ମାନେ ଅପରାଧ ନିୟନ୍ତ୍ରଣର ଏଇ ଅଭିନବ ଉପାୟ ପ୍ରୟୋଗ କରି ଜନ-ସାଧାରଣଙ୍କୁ ନିର୍ମଳ ପ୍ରଶାସନ ଯୋଗାଇ ଦେବାକୁ ସ୍ଥିର କଲେ । ଚାହିଦା ବଢ଼ିଲା । ଆମେରିକାର ବୈଜ୍ଞାନିକମାନେ ଅଧିକରୁ ଅଧିକ ଯନ୍ତ୍ର ନିର୍ମାଣ କରି ବିଦେଶକୁ ରପ୍ତାନୀ କରି ବେଶ୍ ଲାଭବାନ ହେଲେ ।

ଦୁର୍ନୀତି, ଭ୍ରଷ୍ଟାଚାର ଏବଂ ଅପରାଧର ଗନ୍ତାଘର ଭାରତରେ ଏଇ ଯନ୍ତ୍ର ଦ୍ୱାରା ଅପରାଧ ନିୟନ୍ତ୍ରଣ କରିବାକୁ ନୂତନ ସରକାର ବଦ୍ଧପରିକର ହେଲେ । ବିଶ୍ୱବ୍ୟାଙ୍କରୁ ଲୋନ ଆଣି ପର୍ଯ୍ୟାପ୍ତ ସଂଖ୍ୟାରେ ଅପରାଧ ନିୟନ୍ତ୍ରକ ଯନ୍ତ୍ର ଆମେରିକାରୁ ଆମଦାନୀ କରଗଲା । ଦେଶର ପ୍ରତ୍ୟେକ ଫାଣ୍ଡି ଓ ଥାନାରେ ପରୀକ୍ଷାମୂଳକ ଭାବରେ ଏଇ ଯନ୍ତ୍ର ପ୍ରତିଷ୍ଠା କରଗଲା । ଦେଶରୁ ସମସ୍ତ ପ୍ରକାର ଅପରାଧର ମୂଳୋତ୍ପାଟନ କରି ସମୃଦ୍ଧ ପ୍ରଗତିର ସ୍ୱପ୍ନ ଦେଖାଗଲା ।

ଏଇ ଯନ୍ତ୍ରର ବିଶେଷତ୍ୱ ଏଇଯେ, ଏହା ସାମନାରେ କୌଣସି ବ୍ୟକ୍ତିଙ୍କୁ ଛିଡ଼ା କରଇଲେ, ସେ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ କୌଣସି ଅପରାଧ, ଦୁର୍ନୀତି ସହିତ ଜଡ଼ିତ କି ନୁହଁନ୍ତି ଜଣାଇ ଦିଏ । ଅପରାଧର ଗୁରୁତ୍ୱ ଓ ପରିମାଣ ଅନୁସାରେ ଯନ୍ତ୍ର ଦେହରେ ଖଞ୍ଜା ଯାଇଥିବା ଏକ ମିଟର ଦେହରେ ସଙ୍କେତ

ଦେଖାଯାଏ । ତାଛଡ଼ା ଥାନାର କେଉଁ ଦିଗରେ ଅପରାଧୀମାନଙ୍କର ଆଡ୍ଡା ଅଛି ତାହା ଅନ୍ୟ ଏକ ସ୍ୱଇଚ ଦାବିଲେ ଜଣା ପଡ଼ିଯାଏ । ଯଦି ଅପରାଧୀ-ମାନେ ଥାନା ଘେରଓ ବା ଥାନାରେ କିଛି ଗଣ୍ଡଗୋଳ କରିବା ପାଇଁ ଅତି ଗୋପନରେ ଆସନ୍ତି ଏବଂ ସାଥିରେ ମାରଣାସ୍ତ୍ର ଆଣିଥାନ୍ତି, ତେବେ ଯନ୍ତ୍ରରେ ଖଞ୍ଜା ଯାଇଥିବା ଏକ ଟ୍ରାନ୍‌ସମିଟର ମାଧ୍ୟମରେ ଶବ୍ଦ ସଙ୍କେତ ମିଳିଯାଏ । ଫଳରେ ଥାନାଧିକାରୀ ସଦଳବଳେ ସତର୍କ ହୋଇ ଅପରାଧୀମାନଙ୍କର ମୁକାବିଲା କରିବାକୁ ସକ୍ଷମ ହୋଇ ପାରନ୍ତି । ଏଭଳି ଏକ ଅଭିନବ ଯନ୍ତ୍ର ପାଇବା ସକାଶେ ଦେଶର ପ୍ରତ୍ୟେକ ଅଞ୍ଚଳର ଜନସାଧାରଣ କେନ୍ଦ୍ର ସରକାରଙ୍କୁ ନିବେଦନ କଲେ ।

ଆମ ଅଞ୍ଚଳରେ ନୂଆ ଥାନା ଖୋଲା ହେବା ସଙ୍ଗେ ସଙ୍ଗେ ଏଇ ଅଭିନବ ଯନ୍ତ୍ରଟେ ପ୍ରତିଷ୍ଠା କରାଗଲା । ଲୋକଙ୍କ ଖୁସି କହିଲେ ନସରେ । ସମସ୍ତେ ଭାବିଲେ ଏଇଥର ଆମର ଦୁଃଖ ଗଲା । ଏ ଅଞ୍ଚଳରେ ଆଉ ଚୋରି ଡକାୟତି, ଅପରାଧ ହେବ ନାହିଁ । ଶାନ୍ତି ଶୃଙ୍ଖଳା ବିରାଜମାନ କରିବ । ଯାହା ହେଉ ଏତେ ଦିନକେ ସରକାର ନିଜର ପ୍ରତିଶ୍ରୁତି ରକ୍ଷା କରିଛନ୍ତି । ପାଞ୍ଚଟା ନିର୍ବାଚନ ହୋଇଯିବା ପରେ ଏ ଅଞ୍ଚଳ ପ୍ରତି ନେତାଙ୍କର ଶୁଭ ଦୃଷ୍ଟି ବିଛେଇ ହୋଇ ପଡ଼ିଛି । ଦୀର୍ଘଦିନର ଦାବୀ ପ୍ରତି ସରକାର ଗୁରୁତ୍ୱ ଦେଇଛନ୍ତି ।

ନୂଆ ଥାନା ସମ୍ଭାଳିବା ପାଇଁ ସହରରୁ ଜଣେ ପୁରୁଣା ପୋଲିସ ଅଫିସର ଆସି ଜଏନ୍ କଲେ । ଥାନାରେ ପହଞ୍ଚିବା ମାତ୍ରେ ଯନ୍ତ୍ରର ମିଟର ଉଠିଲା । ତାଙ୍କୁ ଆଉ ସମ୍ଭାଳେ କିଏ ? ରାଗରେ ପାଚି ଲାଲ ପଡ଼ିଗଲେ । ସହକାରୀମାନଙ୍କ ଆଗରେ ନିଜର ସଚ୍ଚୋଟ ପଣିଆ ଦେଖାଇବା ସକାଶେ ସରକାରଙ୍କୁ ବହେ ଶୋଧିଲେ । ଯେଉଁ ମନ୍ତ୍ରୀଙ୍କ ପାଇଁ ତାଙ୍କର ଏଠାକୁ ବଦଳି ହୋଇଛି ତାଙ୍କର ଅଠାନବେ ପୁରୁଷଙ୍କ ଶ୍ରାଦ୍ଧ କଲେ । କହିଲେ, "କିହୋ ? ଅପରାଧ ହେବନିତ ଥାନା ରହିବ କାହିଁକି ? ଏତେ ପୋଲିସ କର୍ମଚାରୀ କ'ଣ ଘାସ କାଟିବେ ନା ଥାନାରେ ବସି ତାସ୍ ଖେଳିବେ ? "ଚାକିରୀ କରିବ ପୋଲିସି, ମାଛ ଖାଇବ ଇଲିଶି", ଏକଥାଟା କ'ଣ ଯିଏ ଲେଖିଥିଲା ସେ ଗଞ୍ଜେଇ ଟାଣିଥିଲା ? ନା ଇଲିଶି ମାଛ ତା ସମୟରେ ଶସ୍ତାରେ ମିଳୁଥିଲା ? ଶଳା ଇଲିଶି ମାଛ ଯୋଉ ଦର ହେଲାଣି ପୋଲିସିମାନେ କ'ଣ ଶଳା ଆଇ. ଏ. ଏସ୍. ଅଫିସରମାନେ ବି ଖାଇ ପାରିବେନି । କଥାରେ ଅଛି, "ଯେତେ ଜାରି, ସେତେ ଚୋରି" । କେହି ଚିନ୍ତା କରନି । ସରକାର ଡାଳେ ଡାଳେ ଗଲେ ଆମେ ପତ୍ରେ ପତ୍ରେ ଯିବା । ଯେମିତି ନେଉଥିଲେ ସେମିତି ନେବା । ଉପରୁ ଯଦି ମିଳି ନ ପାରିଲା ଶଳା

ପୋଲିସ ଚାକିରୀ କରି ଲାଭ କ'ଣ ? ଏ ଯୋଉ ବଜାର ଦର ହେଲାଣି ଦରମା ଗଣ୍ଡାକରେ ପରିବାର ପୋଷିବା ସମ୍ଭବ ହେବ ନାହିଁ । ଉପରେ ଉପରେ ଫୁଟାଣି ମାରୁଥିଲେ ମଧ୍ୟ ଭିତରେ ଭିତରେ ଡରି ଯାଉଥାନ୍ତି । ଚାକିରୀ କରିବା-ଠାରୁ ସେ ଉପୁରି ଉପୁରିରେ ପହଁରି ଆସିଛନ୍ତି । ଦରମାରେ ହାତ ବାଜିନି ।

ତଥାପି ଖଣ୍ଡଗିରିରେ କୋଠାଟି ସରିନି । କୋଣାର୍କରେ କୋଠା ଘରଟିରେ ଛାତ ପଡ଼ି ସାରିନି । ଆହୁରି ଚାରି ଚାରିଟା ଝିଅ ବେକରେ ବନ୍ଧା । ସେମାନଙ୍କ ପାଇଁ ପାଣିଭଳିଆ ଖର୍ଚ୍ଚର ସୁଅ ବହିଯିବ । ତେଣେ ପୁଅ ବିଜିନେସ୍ କରିବ ବୋଲି ଲକ୍ଷେ ଦି ଲକ୍ଷ ନେଇ କୁଆଡ଼େ ଉଡ଼ାଇ ଦେଇ ସାରିଲାଣି । ଏ ଦୁଃଖ କାହାକୁ କହିବେ ? ଏଣେ ସରକାର କଣନା ଯନ୍ତ୍ର ଖଞ୍ଜିଲେଣି ଥାନାରେ । ଲୁଚେଇ କରି ନେଲେବି ମିଟର ଚଢ଼ିଯିବ । ରେକର୍ଡ଼ ହୋଇଯିବ ସବୁ । ଟିକିଏ ଚିନ୍ତାକରି ସେ ଯନ୍ତ୍ରର ବିଦ୍ୟୁତ ସଂଯୋଗ କାଟି ଦେଲେ । ମନେ ମନେ କୁରୁଳି ଉଠି ନିଶ ସାଉଁଳେଇ ଗୁଣୁଗୁଣେଇଲେ, "ମୁଁ ପୁରୁଣା ମୂଷାଟି ? ଖାଣ୍ଟି ପାହାଡ଼ିଆ । ପଥର କାଟି କାଟି ଦାନ୍ତ ଶକ୍ତ ହୋଇଯାଇଛି ।" ସରକାର କ'ଣ ନା ଯନ୍ତ୍ରଟେ ବସେଇ ସବୁ ନିର୍ମୂଳ କରିଦେବେ । ଏମିତି କେତେ ସରକାର ଗଲେଣି । ଯାହାହେଉ ସେ ତାଙ୍କ ଧନ୍ଦା ଚୁପ୍ ଚୁପ୍ ଚଳାଇଲେ । କିଛି ମାସ ବିତିଗଲା ।

ହଠାତ୍ ସମଗ୍ର ଦେଶରେ ଅପରାଧ ନିୟନ୍ତ୍ରଣ ସପ୍ତାହ ପାଳନ ପାଇଁ ଡାକରା ଦିଆଗଲା । ମନ୍ତ୍ରୀ ନେତା, କୁଜାନେତାମାନେ ନିଜ ନିଜର ଭବମୂର୍ତ୍ତି ଦେଖାଇ ମୂଲ୍ୟବୋଧର ଦ୍ୱାହି ଦେଇ ଲୋକଙ୍କ ଆଗରେ ଘୋଷାପାଠ ଓକାଳିଲା ପରି ଭାଷଣ ଝାଡ଼ିବାରେ ଲାଗିପଡ଼ିଲେ । ଦେଶରୁ ସବୁ ଦୁର୍ନୀତି, ଭ୍ରଷ୍ଟାଚାର, ଅପରାଧର ମୂଳକୁ ତାଡ଼ି ପକାଇବେ । ଜନସାଧାରଣଙ୍କୁ ନିର୍ମଳ ଶାସନ ଯୋଗାଇ ଦେବେ । ଶାନ୍ତି, ସ୍ଥିରତା ଫେରାଇ ଆଣିବେ । ଧନ-ଜୀବନ ନିରାପଦ ରହିପାରିବ ।

ଖୋଦ ଘରେଇ ବିଭାଗ ମନ୍ତ୍ରୀ ଆମ ଅଞ୍ଚଳକୁ ଆସିଲେ ମୁଖ୍ୟ ଅତିଥି ହୋଇ । ତାଙ୍କ ସାଙ୍ଗରେ ତାଙ୍କର ଚାମଚା, ବେଲଚା, ଆଗକୁହା, କାନକୁହା, ଗାଡ଼ି ଠେଲା, ଠେଙ୍ଗାଡାଳ, ଛୁରୀପେଲା, ବବାଟକିଙ୍ଗା ବୋତଲ ଖୋଲା ସାଙ୍ଗ ସାଥୀ ଆଦି ବନ୍ଧୁ ସମର୍ଥକମାନେ ଆସିଲେ । ଥାନା ସାମନାରେ ବିରାଟ ସଭାର ଆୟୋଜନ କରାଯାଇଥିଲା ।

ମନ୍ତ୍ରୀ ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେଇସାରି ଥାନାରେ ଅପରାଧ ନିୟନ୍ତ୍ରକ ଯନ୍ତ୍ର ଠିକ୍‌ରୂପେ କାର୍ଯ୍ୟ କରୁଛି କି ନାହିଁ ଦେଖିବାକୁ ଗଲେ । ମନ୍ତ୍ରୀଙ୍କ ଭୟରେ ଥାନାଧିକାରୀ ଯନ୍ତ୍ରଟିକୁ ଠିକ୍‌ଠାକ୍ କରି ଥୋଇ ଦେଇଥିଲେ । ମନ୍ତ୍ରୀ ମହାଶୟ ଚେଲାଗୁମୁଣ୍ଡାଙ୍କ ସହିତ ଯେତେବେଳେ ଯନ୍ତ୍ର ସାମନାରେ ଛିଡ଼ା ହେଲେ ଥାନାବାବୁ ପ୍ରମାଦ ଗଣିଲେ । କାରଣ ଯନ୍ତ୍ରରୁ କିଛି ଶବ୍ଦ ବାହାରିଲାନି କି ମିଟର ମଧ୍ୟ ଉଠିଲା ନାହିଁ । ମନ୍ତ୍ରୀ ଯନ୍ତ୍ରକଥା ଉଲ୍ଲେଖ କରି କହିଲେ, "ବନ୍ଧୁଗଣ ! ଏ ଅଞ୍ଚଳରୁ ଅପରାଧ ମୂଳପୋଛ ହୋଇ ଯାଇଛି, ଆମେ ନିର୍ମଳ ପ୍ରଶାସନ ଯୋଗାଇ ପାରିଛୁ । ଆମକୁ ଆଉ ଦି' ଥରିଟା ନିର୍ବାଚନରେ ଜୟଯୁକ୍ତ କରାଇଲେ ଆମେ ଏ ଅଞ୍ଚଳର ଲୋକେ କିପରି ସ୍ୱଚକ୍ଷୁରେ ସ୍ୱର୍ଗ ଦେଖି ଆସି ପାରିବେ ସେଇ ଯନ୍ତ୍ର ମଗାଇବୁ ।" ଏଇ ସମୟରେ ଜଣେ କଲେଜ ଟୋକା ପାଟିକରି କହିଲା, "ଭାଇମାନେ ! ମନ୍ତ୍ରୀ ମିଛୁଆ । ଯନ୍ତ୍ରର ମିଟର ବାରମ୍ବାର ନାଲିଧାର ଟପି ଟପି ଶେଷରେ ଭାଙ୍ଗି ଯାଇଛି । ମୁଁ ନିଜେ ଲକ୍ଷ୍ୟ କରିଛି । ସେମାନେ ଆସିବା ମାତ୍ରେ ମିଟର ଏକାଥରେ ଚରମ ସୀମାରେ ପହଞ୍ଚିଗଲା । ଏମାନଙ୍କ ଅପରାଧର ସୀମା ଟପି ଯାଇଛି । ସରକାରଙ୍କ ଯୋଜନା ବିଫଳ ହୋଇଛି ।

ମନ୍ତ୍ରୀ ଗର୍ଜି ଉଠିଲେ, "ହାରାମଜାଦାଟାକୁ ଆରେଷ୍ଟ କର । ସରକାରଙ୍କୁ ବଦନାମ କରୁଛି । ଯାକୁ ନିଶ୍ଚୟ ବିରୋଧୀ ଦଳିଆ ଶିଖେଇ ପଠେଇଛନ୍ତି ମୋ ସଭ ଭଣ୍ଡୁର କରିବାକୁ ।" ଥାନାବାବୁଙ୍କ ନିର୍ଦ୍ଦେଶରେ ଦି, ଚାରିଜଣ କନେଷ୍ଟବଲ, ଜଣେ ଏ. ଏସ୍. ଆଇ ସେ ଟୋକା ପଛରେ ଗୋଡ଼େଇଲେ । ମନ୍ତ୍ରୀ ପୁଣି ଆରମ୍ଭ କଲେ, "ବନ୍ଧୁଗଣ ! ହଁ ମୁଁ କ'ଣ କହୁଥିଲି କି...... ।"



# ଋଣଂ କୃତ୍ୱା ଘୃତମ୍ ପିବେତ୍

ଆବହମାନ କାଳରୁ ଆମ ସମାଜରେ ଏକ ପ୍ରବାଦ ପ୍ରଚଳିତ ହୋଇ ଆସିଛି ଯେ, "ଋଣଂ କୃତ୍ୱା ଘୃତଂ ପିବେତ୍, ଯାବତ୍ ଜୀବେତ୍ ସୁଖଂ ଜୀବେତ୍" । ଅର୍ଥାତ୍ ଋଣ କରି ଘିଅ ପିଅ, ପରୱା ନାହିଁ । ଆନନ୍ଦ କର । ମଉଜ ମଜ-ଲିସ୍‌ରେ ମସ୍‌ଗୁଲ ହୁଅ । ବିଳାସବ୍ୟସନରେ ମାତ । ମଣିଷ ଜୀବନ ବୁଦ୍‌ବୁଦ୍ ପରାୟ । କେତେବେଳେ ଠୋ କିନା ଫାଟିଯିବ କିଏ ବା ଜାଣେ ? ଯେତେ କାଳବା ବଞ୍ଚିବ ; ଜୀବନର ରଙ୍ଗୀନ ସ୍ୱାଦ ନ ଚାଖିବ କିଆଁ ? "କ'ଣ କରିବା ?" ଏଇ ଦରିଦ୍ର ପଞ୍ଚାକ୍ଷର ମନ୍ତ୍ର ଯେଉଁମାନେ ଜପନ୍ତି ସେମାନଙ୍କ ଭଳିଆ ମୂର୍ଖ ଅପରିଣାମଦର୍ଶୀ ଆଉ କିଏ ଅଛି ? ଅଯଥା ମନକୁ ଯାହା ଭାରକ୍ରାନ୍ତ କରିବା କଥା । କିହୋ ଋଣ କିଏ ନକରୁଛି ? ସରକାର ପରା ଲୋକଙ୍କ ପାଇଁ ଋଣ ମେଳାର ଆୟୋଜନ କରୁଛନ୍ତି ? ଋଣ କରି ଘିଅ ପିଉଥିବା ଲୋକମାନଙ୍କ ମଧ୍ୟରେ ଯଦି ଏକ ପ୍ରତିଯୋଗିତା କରାଯାଏ ତେବେ ରଙ୍ଗାଧର ବାବୁ ଯେ ବେଷ୍ଟଟେନ୍‌ଥ ଟପର ହେବେ ସନ୍ଦେହ ନାହିଁ ।

ରଙ୍ଗାଧର ବାବୁ ଭାରି ରଙ୍ଗୀନ ମିଜାଜ୍‌ର ଲୋକ । ସଚ୍ଚା ପ୍ରେମିକ ପ୍ରବର ରସିକ ଶେଖର । ନୃତ୍ୟ-ସଙ୍ଗୀତ-ସୌନ୍ଦର୍ଯ୍ୟ ପ୍ରିୟ । ଚାରେଟି ସନ୍ତାନର ଜନକ ହୋଇ ମଧ୍ୟ ଚିରସବୁଜ । ସର୍ବଦା ସ୍ମାର୍ଟ ଏଣ୍ଡ ଫିଟ୍‌ଫାଟ୍ । ଜେଣ୍ଟଲ, ଏମିଏବଲ୍ ଏଣ୍ଡ ସ୍ମାଇଲିଂ । ମୁଣ୍ଡରେ ଗୋଟିଏ ହେଲେ ବାଳ ପାଚିବାକୁ ଦିଅନ୍ତି ନାହିଁ । ସାମାନ୍ୟ ଧଳା ହୋଇ ଆସିବା ମାତ୍ରେ ଗଡ଼ରେଜ ହେଉ କି ଟ୍ରୁଟୋନ୍ ହେଉ ଲଗାଇ ଦିଅନ୍ତି । ଯାହାକୁ ଦେଖିଲେ ଚେନାଏ ମୁଚୁକନ୍ଦ ହସିତ ସ୍ୱାଗତ କରନ୍ତି । ପ୍ରତିଦିନ ନୂଆ ନୂଆ ପେଣ୍ଟ ସାର୍ଟ କଡ଼ା ଇସ୍ତ୍ରୀ ଭାଙ୍ଗ ଦେଇ ପିନ୍ଧନ୍ତି । ମିଠାମିଠା କସ୍‌ମେଟିକସ୍ ବ୍ୟବହାର କରନ୍ତି । ସ୍ତ୍ରୀଲୋକମାନଙ୍କ ଭଳି ସଜ ହେବାରେ ତାଙ୍କୁ କେହି ବଳେଇ ଯାଇ ପାରିବେ ନାହିଁ । ପିଲାଦିନେ ନାଚ ପାର୍ଟିରେ ଡୁଏଟ୍ ଦେଉଥିଲେ, ନାଚୁଥିଲେ । ତାଙ୍କୁ ଏକାଧାରରେ ଅଭିନେତା, ନାୟକ, ଗାୟକ, ବାୟକ, ପ୍ରେମିକ, ରସିକ ଭାବରେ ଗ୍ରହଣ କରାଯାଇପାରେ । ତାଙ୍କ ବେଡ଼ରୁମ୍‌ଟିକୁ ବାଦଶାହୀ ରଙ୍ଗମହଲ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସବୁ ଲଙ୍ଗୁଳୀ, ଅଧା ଲଙ୍ଗୁଳୀ ହିରୋଇନଙ୍କ ଫଟୋ ରୁମ୍‌ଟିର କାନ୍ଥ ଯାକରେ ଭରି ଯାଇଛି । ସେଠାକୁ ଅନ୍ୟ କାହାରି ପ୍ରବେଶ ନିଷେଧ । କେବଳ ଯାହା ସ୍ତ୍ରୀ ପ୍ରେମଲତାଙ୍କର ଅଧିକାର ରହିଛି ରାତି ଦଶରୁ ସକାଳ ଛଅ ପର୍ଯ୍ୟନ୍ତ । ଅନ୍ୟ ସମୟରେ ରଙ୍ଗାଧର ବାବୁ ସେ ଘରେ ରହନ୍ତି ଅଥବା ବାହାରକୁ ଗଲେ ଚାବି ପକେଇ ଦିଅନ୍ତି । ନାରୀ ; ବିଶେଷ କରି ସୁନ୍ଦରୀ ରସିକା ନାରୀମାନଙ୍କ ପାଇଁ ତାଙ୍କ ମନରେ ଅହେତୁକ ଦୁର୍ବଳତା କୋଉ କାଳରୁ ରହି ଆସିଛି । ପଦେ ମିଠା କଥା, ଟିକିଏ ହସ, ଟିକିଏ ଇସାରା ପାଇଲେ ସେ ସର୍ବସ୍ୱ ଦେଇ ଦେବାକୁ ଆଗେଇ ଆସନ୍ତି । ନାରୀ ଜଣକ ଯଦି ଗାୟିକା, ନାୟିକା ବା ନର୍ତ୍ତକୀ ହୋଇ-ଥାନ୍ତି ତାଙ୍କ ପ୍ରତି ରଙ୍ଗାଧର ବାବୁଙ୍କର ସ୍ପେସିଆଲ ଏଟ୍ରାକ୍‌ସନ ଥାଏ । କଳେ ବଳେ ତାଙ୍କ ସହ ମିଶିବାକୁ, ପରଶ ପାଇବାକୁ ଆବଶ୍ୟକ ହେଲେ ଋଣ କରି ମଧ୍ୟ ଦାମିକା ପ୍ରେଜେଣ୍ଟେସନ ଦିଅନ୍ତି । ବାର୍. ରେଷ୍ଟୁରାଣ୍ଟ, ପିକ୍‌ଚରକୁ ଇନ୍‌ଭାଇଟ୍ କରନ୍ତି ।

ପ୍ରେମଲତା ସ୍ୱାମୀଙ୍କର ଏଇ ଗୋଟିଏ ଗୁଣକୁ ପସନ୍ଦ କରି ପାରନ୍ତି ନାହିଁ । କହନ୍ତି, "ହୋ; ବଳ ବୟସ ଗଲା । ଆଉ ସଜେଇ ହୋଇ ଲଭ କ'ଣ ? ଝିଅମାନେ ବାହା ହେବାକୁ ହେଲେଣି ବାପ କ'ଣନା ବାଳ ରଙ୍ଗେଇ ଗ୍ଲେପରୀ ମାଇକିନାଙ୍କ ପଛରେ ନଟରପଟର ହେଉଛି ।" ରଙ୍ଗାଧର ବାବୁଙ୍କ ମତରେ "ଲଫ୍ ଏଣ୍ଡ ବି ମେରୀ । ଲାଇଫ୍‌ଟାକୁ ଫୁଲ ଦମ୍‌ରେ ଏନଜୟ କର । ସୁଯୋଗକୁ ହାତଛଡ଼ା କରନାହିଁ ।" କାରଣ ଜୀବନରେ ଯେ କୌଣସି ସୁଯୋଗ କେବଳ ଥରକ ପାଇଁ ଆସେ । ତାକୁ ହାତଛଡ଼ା କରିବା ବୋକାମି ନୁହେଁତ ଆଉ କଣ ? ମନରେ ତାଙ୍କର ଗୋଟିଏ ଦୁଃଖ । ସ୍ତ୍ରୀ ପ୍ରେମଲତାଙ୍କର ରସହୀନ ବ୍ୟବହାର । ତାଙ୍କ ଭଳି ପୁରୁଷ ପାଇଁ ଛଇଛଟକୀ ରସରଙ୍ଗିଣୀ ଚୁଲ୍‌ବୁଲୀ ମାଇକିନାଟେ ବେଶ୍ ମାନିଥାନ୍ତା । ମାତ୍ର ଯାହା ହେବାର କଥା ତାହାତ ହୋଇ ଯାଇଛି । ଆଉ କ'ଣ ବଦଳେଇ ଦେଇ ହେବ ? ଘର ସଂସାର କରୁ କରୁ ଚାରିଟା ପିଲା ହୋଇଯାଇ ଥିଲେ ବି ରଙ୍ଗାଧର ବାବୁ ସନ୍ତୁଷ୍ଟ ହୋଇ ପାରନ୍ତିନି । ସୁନ୍ଦରୀ ବାନ୍ଧବୀଟେ ପାଇଲେ ପାଗଳ ହୋଇ ଉଠନ୍ତି । ଭରି ଇଚ୍ଛା ଥିଲା ତାଙ୍କର ମନମୋହିନୀ କୌଣସି ଦିଲବାଲୀକୁ ସେକେଣ୍ଡ ମ୍ୟାରେଜ କରି ଗୋପନରେ ରଙ୍ଗରସରେ ମାତିଥାନ୍ତେ । ମାତ୍ର ନିଜର ପଦବୀ, ଆଭିଜାତ୍ୟ, ଚାକିରୀକୁ ଆଖିରେ ରଖି ସେଥିରୁ ନିବୃତ୍ତ ହେଲେ ହେଁ କଦବା କେମିତି ସୁଯୋଗ ପାଇଲେ ହାତଛଡ଼ା କରନ୍ତି ନାହିଁ । ତାଙ୍କୁ ରସେଇ ମଜେଇ ଫାଇଦା ହାସଲ କରିବା ପାଇଁ ସୁନ୍ଦରୀମାନଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲେ । ଏଇଥି ପାଇଁ ତ ତାଙ୍କର ବାନ୍ଧବୀ ସଂଖ୍ୟା ବେଶୀ ।

ସେଦିନ ସିଟିବ୍ୟାଙ୍କରୁ ଲୋନ ମିଳିଯିବା ମାତ୍ରେ ରଙ୍ଗାଧର ବାବୁ ଭିଡ଼ିଓ-କୋନର ପାଓ୍ୱାର ହାଉସ ଅଡ଼ିଓ ସିଷ୍ଟମ୍‌ଟେ ଏବଂ କିଛି ସି. ଡ଼ି. କ୍ୟାସେଟ୍ ନେଇ ଆସିଲେ । ଘରେ ପହଞ୍ଚି ସବୁକାମ ପଛରେ ପକାଇ କ୍ୟାସେଟ୍ ଲଗାଇ ଶୁଣିବାକୁ ଲଗିଲେ ନୂଆ ନୂଆ ମନଛୁଆଁ ଫିଲିମ୍ ସଙ୍ଗୀତ । ପ୍ରେମଲତାଙ୍କୁ ଆଉ ରେକେ କିଏ ? କାନି ଅଣ୍ଟାରେ ଖୋସି ଝାଡ଼ୁଟେ ଧରି ଧସେଇ ପଶିଲେ ସେ ଘରେ । "ହଇହୋ ! କୋଉଠୁ ଆସିଲା ଏ ଲରେଲପା ଲରେଲପା, ନାରେ ନାରେ, ନାରେ ନାରେ ? କେତେ ଟଙ୍କା ଦେଇ ଯାକୁ ଆଣିଛ ?"

ରଙ୍ଗାଧର ବାବୁ କଥାଟାକୁ ଟିକିଏ ବୁଲେଇ କହିଲେ, ନହେଲେ ନିସ୍ତାର ନାହିଁ । କହିଲେ "ଭିଜନ୍ ସେଣ୍ଟରବାଲା ଜବର୍ଦସ୍ତ ଦେଇଛି । ବୋନସ୍ ପାଇଲେ ଅଧା ନେବ । ବାକି ଚାରି ପାଞ୍ଚଟା କିସ୍ତିରେ ନେବ । ମୋଟ ଆଠ ହଜାର ପଡ଼ିବ । ବଜେଇ ପରୀକ୍ଷା କରୁନି । ଭଲ ଲାଗିଲେ ରଖିନେବା । କ୍ଷତି କ'ଣ ? ଝିଅ ବାହାଘର ବେଳକୁ କାମରେ ଲାଗିବ ।

"ଆହାଲୋ ମୋ ସଉକ । ଯେମିତି ଗୀତ ଶୁଣିଶୁଣି ପେଟ ଭରିଯିବ । ମଣିଷ ସ୍ୱର୍ଗକୁ ଚାଲିଯିବ ? ସେଦିନୁ କହୁଛି, ଘରକୁ ଟି: ଭି:ଟେ ଆଣ । ପିଲା-ମାନେ ରାମାୟଣ, ମହାଭାରତ ପାଇଁ ପଡ଼ିଶା ଘରକୁ ଧାଉଁଛନ୍ତି । ମୋ କଥା ଶୁଣିଲନି । ତମ ହାତଧରି ବାହା ହୋଇ ଚାରିଟା ଛୁଆର ମା' ହେଲିଣି ଦିନେ ଭଲ ଶାଢ଼ୀଟେ କିଣି ଦେଇଛ ? ହାତକୁ କି କାନକୁ ସୁନା ବଳଟେ ଦେଇଛ ? କ'ଣ ନା ପଇସା ନାହିଁ । ଘର ତିଆରି ଲୋନ ଶୁଝିବାରେ କଟି ଯାଉଛି । ଏତିକି ଦରମାରେ ଚଳିବା ମୁସ୍କିଲ । ଗୀତ ଶୁଣିବାକୁ ଏଣେ ମନ ଅଥୟ । ଯାଉ ପଛେ ଆଠ ହଜାର ।" ସ୍ତ୍ରୀଙ୍କ ସୋହାଗବୋଳା କଥା ରଙ୍ଗାଧରଙ୍କ ମନକୁ ବେଶ୍ ତୁଳୁତୁଳୁ କଲା । ଉପାୟ ନପାଇ ମାନଭଞ୍ଜନ ପାଇଁ ସେ ଉଠିପଡ଼ି ପ୍ରେମଲତାଙ୍କୁ ଏକରକମ ଟେକି ନେଇ ବେଡ୍ ଉପରେ ଅଧାଖୁଆ ଅବସ୍ଥାରେ ରଖି ଆରମ୍ଭ କରିଦେଲେ ଜବର୍ଦସ୍ତ ମାନଭଞ୍ଜନ ପର୍ବ ।

"ରଖନା, ଅଭିମାନ କରନା ମୋ ପ୍ରେମଲତା । ମୋ ପ୍ରେମ ତରଙ୍ଗିଣୀ, ରସରଙ୍ଗିଣୀ, ମାଇଁ ସୁଇଟ୍ ହାର୍ଟ । ମୋତେ ବୁଝନା ଅନ୍ୟଥା । ଦେଉଛି କଥା । ଆଣିଦେବି ସବୁ ଗୋଟି ଗୋଟି ଗଣି ଗଣି । ମାନ ଭଙ୍ଗ ରାଣୀ । ଦିଅ ଗିଲାସେ ଥଣ୍ଡା ପାଣି । ଶୋଷରେ ମୋ ତଣ୍ଟି ଶୁଖିଶୁଖି ଆସିଲାଣି ।"

ପ୍ରେମଲତା ନିଜକୁ ସ୍ୱାମୀଙ୍କ କବଳରୁ ମୁକ୍ତ କରି ନେଇ ପ୍ରେମରେ ଦର୍ଶି ଧଲେ ଧସଧସ । "ଯାଉନ ତମର ଭେଟ ମନମୋହିନୀ ଠକିସ୍ୱାଲି ମାଳାଣୀ

ପାଖକୁ ? ଆରିଷ୍ଟୋକ୍ରାଟ୍ ହୋଟେଲରେ ଖାସ୍ ତମରି ପାଇଁ ରୁମ୍ ବୁକ୍ କରି ରଖିଥିଲି । ଦୁଇ ପହରରେ ଫୋନ୍ କରିଥିଲି । ମୁଁ କହିବାକୁ ଭୁଲି ଯାଇଥିଲି ।'' ମୋତେ ବିଶ୍ୱାସ କର ପ୍ରେମ...ମୁଁ...ମୁଁ... । ପାଟି ଖନି ମାଡ଼ିଗଲା ରଙ୍ଗାଧରଙ୍କର ।

''ମୁଁ ଆଉ କିଛି ଶୁଣିବିନି । ତମର ସପେଇ ଶୁଣିଶୁଣି କାନ ବଧିର ହୋଇଗଲାଣି । ଆଜି ପଇସା ହୋଇଯାଉ । ସେ ଆସି ଏ ଘରେ ରହୁ ନ ହେଲେ ମୁଁ ରହେ । ଲାଜ ସରମ ସବୁ ପୋଡ଼ି ଖାଇଲଣି ? ବୁଢ଼ା କାଳରେ ପ୍ରେମ ଗଜୁରୁଛି ? ଲୋକେ କ'ଣ କହିବେ ?'' ଏତକ କହି ରାଗ ତମ ତମ ହୋଇ ପ୍ରେମଲତା ବାହାରି ଗଲେ । ରଙ୍ଗାଧର ବାବୁଙ୍କ ମଗଜରେ କିଛି ପଶିଲାନି । କ'ଣ କରିବେ ? ଏଯାଏ ମିଛ କହି ସ୍ତ୍ରୀଙ୍କ ସରଳତାର ସୁଯୋଗ ନେଇ ଅନେକ ଟଙ୍କା ଉଡ଼ାଇଛନ୍ତି ଅନ୍ୟମାନଙ୍କ ପଛରେ । ଏବେ ଉପାୟ କ'ଣ ? କିଛି ଭଲ ଲାଗିଲାନି ତାଙ୍କୁ । ପ୍ରେମଲତା ଦେହ ଖରାପର ବାହାନା କରି ଝିଅମାନଙ୍କ ପାଖରେ ଶୋଇଗଲେ । ରଙ୍ଗାଧର ବାବୁ ଏକା ଏକା ରାତିଟାଯାକ ଶାନ୍ତିରେ ଶୋଇ ପାରିଲେନି ।

ରାତି ପାହିଲା କ୍ଷଣି ରଙ୍ଗାଧର ବାବୁ ନିତ୍ୟକର୍ମ ସାରି ବଜାରକୁ ବାହାରି ଗଲେ । ଦୋକାନୀମାନଙ୍କୁ ବୋନସ ପାଇଲେ ଦେବେ କହି କଲର ଟି. ଭି., ଓ୍ୱାଶିଂ ମେସିନ୍, ପ୍ରେମଲତାଙ୍କ ପାଇଁ ଭଲ ଶାଢ଼ୀ, ଝିଅ ପାଇଁ ମଧୁମତୀ, ପାଉଁଜି, ପୁଅ ପାଇଁ ଜିନ ପ୍ୟାଣ୍ଟସାର୍ଟ ନେଇ ଆସିଲେ । ପରିବେଶ ବଦଳି ଗଲା । ପ୍ରେମଲତାଙ୍କ ଅଭିମାନ କୁଆଡ଼େ ଉଭେଇଗଲା ।

ପରଦିନ ରଙ୍ଗାଧର ବାବୁ ଅଫିସକୁ ଯାଇ ଶୁଣିଲେ ଅନାଥବନ୍ଧୁଙ୍କ ପରିବାର କଥା । ଅମୁକ ଆଣ, ସମୁକ ଆଣ । କିନ୍ତୁ ଟଙ୍କା ଆସିବ କୁଆଡ଼ୁ ? ଦରମା ଗଣ୍ଡାକତ କୋଉ ଆଡ଼କୁ ନୁହେଁ, ଋଣ କରି ଘିଅ ପିଇବା କ'ଣ ବୁଦ୍ଧି-ମାନର କାମ ? ଦୁଇ ବନ୍ଧୁଙ୍କ କଥା ମଝିରେ ଜୀବନବାବୁ ପଶିଆସି କହିଲେ, ''ଆଜ୍ଞା ! ଆଜିକାଲି ଋଣ ନ କରୁଛି କିଏ ? ଆମ ଦେଶଟା ପରା ଋଣ ସାଗରରେ ଉବୁଟୁବୁ ହେଲଣି ? କେତେବେଳେ ବୁଡ଼ିଯିବ କିଏ ଜାଣେ ? ନେତା ମନ୍ତ୍ରୀଏ କହୁଛନ୍ତି, ବିଦେଶରୁ ଋଣ ନ ଆଣିଲେ ଦେଶକୁ ଚଳାଇ ହେବନି । ସବୁ କ୍ଷେତ୍ରରେ ପ୍ରଗତି ସାଧନ କରି ହେବନି । ଆମ ସବୁରି ମୁଣ୍ଡରେ ପରା ଗୋଟିଏ ଲେଖାଏଁ ଦଶକୋଟିଆ ଋଣ ବୋଝ ଲଦା ହୋଇ ସାରିଲାଣି ? ସେଇଥିରେ ପୁଣି ସରକାର କ'ଣ ନା ଋଣଗ୍ରୁଡ଼ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । କିହୋ, ଋଣ କରି ଋଣଗ୍ରୁଡ଼ କରିବା କୋଉ ବିଜ୍ଞତାର ପରିଚୟ ?

ଅନାଥବନ୍ଧୁ କହିଲେ, ଆମ ଦେଶର ଛଅଶହେକୋଟି ଜନତା ଯଦି ବିଶ୍ୱ ବ୍ୟାଙ୍କ ଏବଂ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିକୁ ଆବେଦନ କରନ୍ତେ ଏବଂ ସେମାନେ ଦୟାକରି ଭରତକୁ ଦେଇଥିବା ସବୁ ଋଣ ଛାଡ଼ କରି ଦିଅନ୍ତେ, ତେବେ ?

"ଖୁବ୍ ଭଲ ହୁଅନ୍ତା । ମୁଁ ଆଜିରେ ଆଉ କିଛି ଋଣ କରି ଆମ ପ୍ରେମ ଲତାଙ୍କୁ ସୁନାରେ ଛାଇ ଦିଅନ୍ତି ।" ସମର୍ଥନ କଲେ ରଙ୍ଗାଧର ବାବୁ । ଜୀବନବାବୁ କହିଲେ, "ଋଣ କରୁଥିବା, ଘିଅ ପିଉଥିବା, ମଉଜ ମଜଲିସରେ ମାତିଥିବା, ଯେତେବେଳେ ଯାହା ହେବ ଦେଖାଯିବ । ନଇ ନଦେଖି ଆଗରୁ ଲୁଗାପଟା ଫିଙ୍ଗି ଲଙ୍ଗଳା ହେବା କାହିଁକି ??"



# ମା-ମ-ସ. ଉପାଖ୍ୟାନ

ସେଦିନ ହଠାତ୍ ପିଲାଦିନର ସାଙ୍ଗ ଗାଲୁଆ ସହିତ ସାକ୍ଷାତ୍ ହୋଇଗଲା । ତାକୁ ଦେଖି ଚିହ୍ନା ଚିହ୍ନା ଲାଗୁଥିଲେବି ମୁଁ ଭରସି କରି କିଛି ପଗ୍ଭରି ପାରୁନଥାଏ । ସ୍ମୃତି ପେଟରକୁ ଯେତେ ଅଣ୍ଡାଳିଲେ ବି ସୁରାକ୍ ପାଉନଥାଏ । ସେ କିନ୍ତୁ ମୋତେ ଦେଖି ଏଡ଼େ ପାଟିରେ ରଡ଼ି ଛାଡ଼ିଲା "ହୋ ମାଷ୍ଟ ଭାଇନା ? ଅକାଳେ ସକାଳେ ବଜାରେ ବଜାରେ ଭାରି ମଜାରେ ଟହଲ ମାରୁଛ ଯେ ? କ'ଣ ବଦଳି ହୋଇଗଲ ? ଏତକ କହୁ କହୁ ସେ ଆସି ମୋତେ କୁଣ୍ଢେଇ ଉପରକୁ ଟେକି ଧରିବା ଉପରେ । ମୋ ସହିତ ତାଳଦେଇ ଚାଲୁଥିବା ଆମ ଶ୍ରୀମତୀ ଅନସୂୟା ଚିହିଁକି ଉଠିଲେ । ଭୟରେ ଚିତ୍କାର ଛାଡ଼ିଲେ, "ଗୁଣ୍ଡା...ଗୁଣ୍ଡା... ବଦମାସ । ଧାଇଁ ଆସ କିଏ କୋଉଠି ଅଛ, ରକ୍ଷାକର ।" ସେ ମୋତେ ଛାଡ଼ି-ଦେଇ ହାତଯୋଡ଼ି ହସି ହସି କହିଲା "ମାଇଁ ଡିୟରେଷ୍ଟ ସୁନା ଭଉଜ ! ମୁଁ ଗୁଣ୍ଡା ନୁହେଁ । ଗୁଣ୍ଡା ହୁଣ୍ଡାଙ୍କ ଗୋଷାଁପ, ମୁଁ ଏଠିକା "ମା-ମ-ସ"ର ସଭାପତି" ଭାଇନାଙ୍କ ସାଙ୍ଗରେ ପଢୁଥିଲି । ଅନେକ ବର୍ଷ ପରେ ଆଜି ଦେଖା ସାକ୍ଷାତ ।

ସେଇକ୍ଷଣି ମୋ ସ୍ମୃତିପଟରେ ଏକ ଚେହେରା ଉକୁଟି ଉଠିଲା । ସେଦିନର ସେଇ ଗାଲମାଧବ ଓରଫ୍ ଗାଲୁଆ ଏବେ ବେଶ୍ ହୃଷ୍ଟପୁଷ୍ଟ ଷଣ୍ଢମାର୍କା ହାଗେ । ପାଲଟି ଯାଇଛି । ପିଲାଦିନେ ଗେଡ଼ା, ପତଳା ଥିଲା । କେହି କେହି ତାକୁ ଶୁକୁଟା, କୁଟାଖିଅ, କପା କାଠି କହି ଚିଡ଼ାଉଥିଲେ । ଏବେ ତାକୁ ଦେଖିଲେ ସହଜରେ ଚିହ୍ନିବା ମୁସ୍କିଲ ହେବ । ଅସମ୍ଭବ ଭାବରେ ବଦଳି ଯାଇଛି ତାର ଚେହେରା । ମୋଟା ହୋଇଯାଇଛି । ଫୁଲ ପ୍ୟାଣ୍ଟ, ବ୍ୟାନିୟନ ପରିହିତ ମାଗୁରୁ ନିଶୁଆ ଗାଲୁଆକୁ ଦେଖିଲେ ଯେ କେହି ଗୁଣ୍ଡା ବଦମାସ୍‌ଟେ ବୋଲି ଭ୍ରମରେ ପଡ଼ିଯିବ । ମୁଁ ତାକୁ ପଚାରିଲି, "କିରେ, କ'ଣ କରୁଛୁ ଏବେ ?" ସେ ଯାହା କହିଲା ଶୁଣି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ବେଜାଏ ହସିଲି ।

କହିଲା, "ଭାଇ ! ତୁ ସିନା ପାଠପଢ଼ି ଭାଗ୍ୟବଳରୁ ବଡ଼ ଅଫିସରଟେ ବନିଗଲୁ । ହେଲେ ମୁଁ ତ ଆଇ-ଏ-ଫାଟକ ଡେଇଁ ପାରିଲିନି । ଚାକିରି ମିଳୁଛି

କୋଉଠି ? ଲଙ୍ଗଳ ଧରିବାତ ମୋ ଦ୍ୱାରା ସମ୍ଭବ ନୁହେଁ । ବାପାଙ୍କ ଅନ୍ନଶ୍ରାଦ୍ଧ କରି କରି ଭାରି ବିରକ୍ତ ଲାଗିଲା । କିଛିଦିନ ଯାଇ ମାମୁଁ ଘର ଗାଁରେ ଯାତ୍ରା ଦଳରେ ଅଭିନୟ କଲି । ସେଥିରେ ବି ମନ ମାନିଲାନି, ଏବେ ଏଠିକା "ମା-ମ-ସ"ର ସଭାପତି, ବେଶ୍ ଚାଲିଯାଉଛି ।

ଶ୍ରୀମତୀ ବଲ ବଲ କରି ଚାହିଁଥାନ୍ତି । ମୁଁ ମଧ୍ୟ କିଛି ବୁଝିପାରୁ ନଥାଏ "ମା-ମ-ସ" କ'ଣ ? ଆଜିକାଲିତ କେତେ ନୂଆ ନୂଆ ସଂସ୍ଥା ଗଢ଼ା ହେଲାଣି, ହୁଏତ ସେମିତିକା କିଛି ଗୋଟେ ହୋଇଥିବ । କାରଣ ବିଭିନ୍ନ ସଂସ୍ଥା ଗଢ଼ି ଚାନ୍ଦା ଆଦାୟ କରି ଚଳିବା ଏ ଯୁଗ ଟୋକାଙ୍କର ଏକ ଧନ୍ଦା ହୋଇଗଲାଣି । କିନ୍ତୁ, ଗାଲୁଆ ଯେତେବେଳେ ସବୁକଥା ବୁଝାଇ ଦେଲା ସେତେବେଳେ ମୋ ଅକଲ ଗୁଡ଼୍ମ୍ । ସେ ଯାହା କହିଲା ତାର ଅର୍ଥ ଏମିତି,—

"ମା-ମ-ସ" ମାନେ ମାଡ଼ ମାର ସଂଘ । ସହରରେ ନୂଆକରି ଏଇ ସଂଘ ଗଠିତ ହୋଇଛି । ଗାଲୁଆ ଓର୍ଫ ବାବୁ ଗାଲମାଧବ ଏହାର କ୍ଷମତାଶାଳୀ ସଭାପତି । ନୂଆ ମୁଖ୍ୟମନ୍ତ୍ରୀଙ୍କ ଘୋଷଣାନୁସାରେ ଦୁର୍ନୀତିଗ୍ରସ୍ତ, ଲାଞ୍ଚଖୋର ଅଫିସରମାନଙ୍କୁ ଖାସ୍ ମାଡ଼ ଦେବା ସକାଶେ ଏଇ ସଂଘ ଉଦ୍ଦିଷ୍ଟ । ଯେଉଁ ଅଞ୍ଚଳର ବ୍ୟକ୍ତିବିଶେଷ ବା ଜନସାଧାରଣ ଯେଉଁ ଦୁର୍ନୀତିଗ୍ରସ୍ତ ଅଫିସରଙ୍କୁ ମାଡ଼ଦେବେ ବୋଲି ନିଷ୍ପତ୍ତି ନେବେ, ସେମାନେ ପ୍ରଥମେ ମୁଖ୍ୟମନ୍ତ୍ରୀଙ୍କୁ ଟେଲିଗ୍ରାମଟେ କରି "ମା-ମ-ସ"କୁ ଜଣାଇଲେ ସେମାନେ ନିର୍ଦ୍ଦିଷ୍ଟ ଦିବସର ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ଅଫିସରଙ୍କୁ ନିର୍ଦ୍ଦିଷ୍ଟ କାଇଦାରେ ମାଡ଼ ଦେବେ । ସେଥିପାଇଁ ଅବଶ୍ୟ କିଛି ପାଉଣା ନେବେ । କାରଣ ଯେଉଁମାନେ ମାଡ଼ ଦେବାକୁ ନିଷ୍ପତ୍ତି ନେବେ ସେମାନେ ଘଟଣା ସ୍ଥଳକୁ ଯିବେନାହିଁ । ଅଯଥାରେ କାହିଁକି ଥାନା ପୋଲିସ ଝାମେଲାରେ ପଶିବେ ? ମାଡ଼ମାର ସଂଘର ସଦସ୍ୟମାନେ ସମସ୍ତେ ବେକାର । ଚୋରି, ଗୁଣ୍ଡାମି, ଜୋରଜୁଲମ ଘଟଣାରେ ସମସ୍ତଙ୍କ ନାମରେ କିଛିନା କିଛି କେଶ୍ ରହିଛି । ସେମାନେ ଚୋରି-ଦଉଡ଼ିକଟା । ଯାହାକୁ ମାଡ଼ଦେବେ ଅନ୍ତତଃ ଛ'ମାସ ଯାଏ ହସ୍ପିଟାଲଇଜଡ଼୍ କରିଦେବେ । ଯଦି ମାଡ଼ଖିଆ ଅଫିସରଙ୍କ ଆଡ଼ୁ କିଛି ହାତଗୁଞ୍ଜା ମିଳିଗଲା ତେବେ ମାଡ଼ ପରିମାଣ କୋହଳ ହୋଇ ଯାଇପାରେ । ଏତଦ୍ ବ୍ୟତୀତ ସେମାନେ ସହରରେ ହେଉଥିବା ସାର୍ବଜନୀନ ଦୁର୍ଗାପୂଜା, କାଳୀପୂଜା, ଲକ୍ଷ୍ମୀ ପୂଜା ଆଦିପାଇଁ ରସିଦ୍ ବହି ନେଇ ଚାନ୍ଦା ଆଦାୟ କରନ୍ତି । ସେମାନେ ନିଜପାଇଁ ପଚିଶ ପର୍ସେଣ୍ଟ କମିଶନ କାଟିରଖି ଅବଶିଷ୍ଟ ପଇଠ କରନ୍ତି ପୂଜାକମିଟିର କର୍ମକର୍ତ୍ତାଙ୍କ ପାଖରେ । ପୂଜା ହୁଏ, ଚାନ୍ଦା ଆଦାୟ ହୁଏ, ମାତ୍ର କିଛି ଝମେଲା

ଉପୁଜେ ନାହିଁ । ଏଇ ମାଧ୍ୟମରେ ଗାଲୁଆ ଏବଂ ତାର ଦଳ ବେଶ୍ ଆରାମରେ ଅଛନ୍ତି । କିଛି ଅସୁବିଧା ନାହିଁ ସେମାନଙ୍କର । ଆମେ ଋକିରି କରି ଆମ ପାଖରେ ଯାହା ନାହିଁ ସେମାନଙ୍କ ପାଖରେ ତାହା ଅଛି ।

ସବୁ କଥା ଶୁଣେଇ ସାରି ଗାଲୁଆ ମୋତେ ଟିକିଏ ଦୂରକୁ ଡାକିନେଇ କାନପାଖରେ ଫିସ୍ ଫିସ୍ କରି କହିଲ ; "ବୁଝିଲୁ ଭାଇ ! ତୋ ବିରୁଦ୍ଧରେ ଲୋକେ ଟେଲିଗ୍ରାମ କରିବେ ବୋଲି ମୁଁ ବିଶ୍ୱସ୍ତ ସୂତ୍ରରୁ ଖବର ପାଇଛି । ତୋ ନାଁଟା ଶୁଣି ମୋତେ ଚିହ୍ନିଲ ଚିହ୍ନିଲ ଲାଗିଲା । ଅନେକ ବର୍ଷ ଧରି ଦେଖା ସାକ୍ଷାତ୍ ହୋଇ ନଥିଲା । ସେଦିନ ମାର୍କଣ୍ଡିଆ ଠାରୁ ବୁଝି ଜାଣିଲି ଯେ ତୁ ଏବେ କିଛିଦିନ ହେଲା ଟ୍ରାନସ୍‌ଫର ହୋଇ ଆସିଛୁ । ସାବଧାନ୍ ଥିବୁ । ଅବଶ୍ୟ "ମା-ମ-ସ" ଏ ଘଟଣାରେ ହସ୍ତକ୍ଷେପ କରିବ ନାହିଁ । ମୁଁ ସଭପତି ଥାଉଁ ଥାଉଁ ତୁ ମାଡ଼ ଖାଇବୁ, ଏଇଟା କ'ଣ ଭଲଲାଗିବ ମୋତେ ??

ମୁଁ ଆଶ୍ଚର୍ଯ୍ୟ ହେଲି, ସରକାରଙ୍କର ସବୁ ନିର୍ଦ୍ଦେଶ ମାନି ଜନସାଧାରଣଙ୍କ ମଙ୍ଗଳ ପାଇଁ ନିଜକୁ ନିୟୋଜିତ କରି ମୁଁ ଶେଷରେ ହେଲି ଦୁର୍ନୀତିଗ୍ରସ୍ତ ମାଡୁଆ ଅଫିସର । ଗାଲୁଆକୁ ସାକୁଲେଇ ପଋରିବାରୁ ସେ ଅସଲ କଥାଟି କହିଲ । ସେ ଅଞ୍ଚଳର ଜଣେ ସରପଞ୍ଚ ମୋ ନାମରେ ମିଥ୍ୟା ଅଭିଯୋଗ କରିଛି । କିଛି ଲୋକଙ୍କୁ ଟଙ୍କାଦେଇ, ମଦ ପିଆଇ ମୋ ବିରୁଦ୍ଧରେ ମତେଇଛି କାରଣ ମୁଁ ତା ଝିଅକୁ ନିଯୁକ୍ତି ନଦେଇ ଜଣେ ଗରିବ କୃଷକର ଯୋଗ୍ୟା ଝିଅକୁ ଗାଇଡ୍ ହିସାବରେ ନିଯୁକ୍ତି ଦେଇ ମହା ଅପରାଧଟେ କରି ପକାଇଛି । ମୁଁ କାଳେ ଦୁର୍ନୀତିଗ୍ରସ୍ତ । ସରକାରଙ୍କ ଯୋଜନା ଅର୍ଥ ବାଟମାରଣା କରିବା ସଙ୍ଗେ ସଙ୍ଗେ ଲୋକଙ୍କ ଠାରୁ ପ୍ରତିକାମରେ ଖୁଡିମତ ଲାଞ୍ଚ ନେଉଛି । ନେତା, ମନ୍ତ୍ରୀତ ସେଇ ଲଭର ମର୍ଜି । ସେମାନେ ଯାହା କହିବେ ତାହା ବେଦବାକ୍ୟ । ଯାହା କରିବେ ତାହା ଯଥାର୍ଥ । ସତରେ ମୋରି ଭଳି କେତେ ନିର୍ବାହ ଅଫିସର ଅଯଥାରେ ମାଡ଼ଖାଇ ବଦ୍‌ନାମ ହେଉନଥିବେ ? ଧନ୍ୟ ସରକାର । ଧନ୍ୟ ଧନ୍ୟ ମାନ୍ୟବର ମୁଖ୍ୟମନ୍ତ୍ରୀ । ଧନ୍ୟ ତମ ମାଡ଼ମର ଅଭିଯାନ । ଧନ୍ୟ ଏଇ "ମା-ମ-ସ" । ଶେଷରେ ଗାଲୁଆକୁ ଋ' କପେ ପିଆଇ ଡବଲ ଧନ୍ୟବାଦ ଦେଇ ଶ୍ରୀମତୀଙ୍କ ସହିତ ଘରକୁ ଫେରିଲି ।

●

# ନିଖିଳ ଭାରତ ହିଞ୍ଜ୍ଡ଼ା ମହାସଭା

ଏ ମଧ୍ୟରେ ନିଖିଳ ଭାରତ ହିଞ୍ଜ୍ଡ଼ା ମହାସଭାର ଏକ ଗୁରୁତ୍ୱପୂର୍ଣ୍ଣ ସାଧାରଣ ଅଧିବେଶନ ନୂଆଦିଲ୍ଲୀ ସ୍ଥିତ ଖୋଜାମହଲ ଠାରେ ଖୁବ୍ ଜାକଜମକରେ ଅନୁଷ୍ଠିତ ହୋଇଯାଇଛି । ଭାରତର ପ୍ରତ୍ୟେକ ଅଞ୍ଚଳରୁ ହଜାର ହଜାର ସଂଖ୍ୟାରେ ହିଞ୍ଜ୍ଡ଼ାମାନେ ସୁସଜ୍ଜିତ ହୋଇ ଶୋଭାଯାତ୍ରାରେ ଆସି ଏଇ ଅଧିବେଶନରେ ଯୋଗଦାନ ପୂର୍ବକ ବିଭିନ୍ନ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଏଇ ଅଧିବେଶନକୁ ଜାପାନ୍‌ର ହିଞ୍ଜ୍ଡ଼ାକୁଳ ମଉଡ଼ମଣି ଅଲିଙ୍ଗାସୁ ଟାକାନାସୁ ପ୍ରଦୀପ ପ୍ରଜ୍ଜ୍ୱଳନ କରି ଉଦ୍‌ଘାଟନ କରିଥିଲେ । ଚୀନ୍ ଦେଶର ହିଞ୍ଜ୍ଡ଼ା ମହାସଭାର ସଭାପତି ୟାଙ୍ଗ୍‌ଚିୟାଙ୍ଗସ୍ୟାଙ୍ଗ୍ ମାଇଚ୍ୟାଙ୍ଗ୍ ମୁଖ୍ୟ ବକ୍ତା ଭାବରେ ଯୋଗ ଦେଇଥିଲେ । ଆବାହକ ତଥା ନିଖିଳ ଭାରତ ହିଞ୍ଜ୍ଡ଼ା ମହାସଭାର ପ୍ରତିଷ୍ଠାତା ସଭାପତି ଶ୍ରୀ ଶ୍ରୀ ଶତାଧିକ ଶ୍ରୀ ଶିଖଣ୍ଡୀ ବିହାରୀ ଦାସ ଫତେସିଂ ପଟଓ୍ୱାରିଲାଲ ବେଣୀବାଲେ ସ୍ୱାଗତ ଭାଷଣ ଦେବା ସଙ୍ଗେ ସଙ୍ଗେ ଅତିଥି ପରିଚୟ ଦେଇଥିଲେ ଏବଂ ଅଧିବେଶନର ଆଭିମୁଖ୍ୟ ସଂପର୍କରେ ସମ୍ୟକ୍ ସୂଚନା ପ୍ରଦାନ କରିଥିଲେ । ଅତିଥି ଏବଂ ବକ୍ତାମାନେ ହିଞ୍ଜ୍ଡ଼ା ସମାଜର ବିଭିନ୍ନ ସମସ୍ୟା ସଂପର୍କରେ ସବିଶେଷ ଆଲୋଚନା କଲେ । ଉପସ୍ଥିତ ହିଞ୍ଜ୍ଡ଼ାମାନେ ଷଣ୍ଢାଭୋଜନ ପୂର୍ବକ ସାରଗର୍ଭକ ଭାଷଣକୁ ପାଏସ୍ ଭଳି ଘଟ ଘଟ ପିଇ କଣ୍ଠଖୋଲା ସମର୍ଥନ ଜ୍ଞାପନ କଲେ । ସେଇ ଅନୁସାରେ ବିଭିନ୍ନ ପ୍ରସ୍ତାବ ଗ୍ରହଣ କରାଯାଇ ସରକାରଙ୍କୁ ସ୍ମାରକ ପତ୍ର ଦିଆ ଯିବାକୁ ସ୍ଥିର କରାଗଲା । ସରକାର ଯଦି ଦାବୀ ପୂରଣ ନକରିବେ ତେବେ ବ୍ୟାପକ ଆନ୍ଦୋଳନ କରାଯିବାକୁ ଦୃଢ଼ ନିଷ୍ପତ୍ତି ନିଆଗଲା ।

ଅଭଲ ନଗରର ସାମାଦିକ ଚିତ୍ତବିନୋଦନ ଟିପ୍‌ଟପ୍ ରାୟଙ୍କ ଟୀପାଖାତାରୁ ଉଦ୍ଧୃତ ମହାମହିମ ହିଞ୍ଜ୍ଡ଼ା ନେତାମାନଙ୍କର ସମୂହ ଭାଷଣର ସାରମର୍ମ ଏଇପରି,—

"ଏଠାରେ ଉପସ୍ଥିତ ସମଗ୍ର ଭାରତର ବିଭିନ୍ନ ଅଞ୍ଚଳର ଚିରଅବହେଳିତ ଅଗଣିତ ଅଜାତଶ୍ମଶ୍ରୁ ଭାଇମାନେ । ଯୁଗଯୁଗ ଧରି ଏ ସମାଜ ଆମ ପ୍ରତି ଅବିଚାର କରି ଆସିଛି । ଆମକୁ ମାଇଚିଆ, ଅଣପୁରୁଷିଆ, ଅପଦଣିଆ କହି ଥଟ୍ଟା ତାମସା କରି ଆସୁଛନ୍ତି ସମସ୍ତେ । ଆମେ ସବୁ ଯେମିତି ଚିଡ଼ିଆଖାନାର ଅଦ୍ଭୁତ ଜୀବ । ଆମ ଥୋଡ଼ିରେ ଦାଢ଼ୀ ବା ନାକତଳେ ନିଶ ନବାହାରିବା କ'ଣ ଆମର ଦୋଷ ? ଆମ ମୁହଁଭଳି ଚିକ୍କଣ ମୋଲାୟମ ଦର୍ପଣ ଆଉ କାହାର ଥିବ ?

ଶେଭିଙ୍ଗ୍ ପାଇଁ ଗୋଟାଏ ପଇସା ଖର୍ଚ୍ଚ ହୁଏନା । ଏହା ଦ୍ୱାରା ଆମ ଆର୍ଥନୀତି ସମୃଦ୍ଧ ହେଉ ନାହିଁକି ? ଆମ ମୁଖ ଚାହିଁଲେ ପାପ ଲେଖା ହୋଇଯିବ କାହିଁକି ? କାର୍ଯ୍ୟ ସଫଳ ନହେବ କାହିଁକି ? ଏସବୁ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀର ଚକ୍ରାନ୍ତ । ସେମାନେ ଆମକୁ ହୀନ ଚକ୍ଷୁରେ ଦେଖନ୍ତି । ଚିରକାଳ ଅବହେଳିତ, ଅପମାନିତ, ଅତ୍ୟାଚାରିତ କରି ରଖିବାକୁ ଚାହାଁନ୍ତି । ସମାଜର ପ୍ରତ୍ୟେକ କ୍ଷେତ୍ରରେ ଆମକୁ ଅପଦସ୍ତ କରିବାକୁ ଚାହାଁନ୍ତି । କିନ୍ତୁ, କାହିଁକି ? ଆମ ବିରୁଦ୍ଧରେ ଏ ଷଡ଼ଯନ୍ତ୍ର ?? ଆମେ କ'ଣ ଭଗବାନଙ୍କ ସୃଷ୍ଟିର ଜୀବ ନୋହୁଁ ? ମଣିଷପଣରେ ଗଣା ନୋହୁଁ ? ଆମର କିଛି ଅଧିକାର ନାହିଁ ? ଆମେ କ'ଣ ଦେଖିବାକୁ ସୁନ୍ଦର ନୋହୁଁ ? କେଉଁ ଗୁଣରେ ଆମେ ହୀନ ? ଆମେ କ'ଣ ଭୋଟ ଦେଇ ସରକାର ଗଢ଼ିବାରେ ସାହାଯ୍ୟ କରୁନାହୁଁ ? ଏମିତି କେଉଁ କାମ ଅଛି ଯାହା ଆମଦ୍ୱାରା ସମ୍ଭବ ନୁହେଁ ? ଆମକୁ ସୁନ୍ଦରୀ ଯୁବତୀମାନେ ବିବାହ ନକରିବେ କାହିଁକି ? ଆମଠାରୁ କ'ଣ ପ୍ରେମ କରିବାରେ ଅନ୍ୟମାନେ ବଳେଇ ଯିବେ ? ନାରୀମାନେ ଆମ ପାଖରେ ଯେତେଦୂର ସୁରକ୍ଷିତ ରହିପାରିବେ ଅନ୍ୟପାଖରେ କ'ଣ ତାହା ସମ୍ଭବ ? ସଗର ରଜାଙ୍କର ଦୁଇ ରାଣୀଙ୍କ ସଂସର୍ଗରେ ଯଦି ଭଗୀରଥ ଜନ୍ମ ହୋଇ ସ୍ୱର୍ଗରୁ ଗଙ୍ଗା ଆଣିପାରିଲେ, ସଗର ବଂଶକୁ ଉଦ୍ଧାର କରିପାରିଲେ, ଆମେ କ'ଣ କିଛି କରିପାରିବା ନାହିଁ ? ବିଭିନ୍ନ କ୍ଷେତ୍ରରେ ନେତୃତ୍ୱ ନେଇ ଆମେ କ'ଣ ଦେଶକୁ ରକ୍ଷା କରିପାରିବା ନାହିଁ ? ନିଶ୍ଚୟ ପାରିବା, ମାତ୍ର ଆମକୁ ସେଭଳି ସୁଯୋଗ ଦିଆଯାଉନାହିଁ ।

ଆମର ପୂର୍ବପୁରୁଷଙ୍କ କଥା ଚିନ୍ତା କରାଯାଉ । ମହାଭାରତ ଯୁଦ୍ଧ ସମୟରେ ମହାରଥୀ ପିତାମହ ଭୀଷ୍ମ ପରା କେବଳ ମୁହଁକୁ ଚାହିଁ ଦେଇ ହୀନବୀର୍ଯ୍ୟ ହୋଇଯାଇଥିଲେ ? ଆଉ ଅସ୍ତ୍ର ଧାରଣ କରିନଥିଲେ । ମୋଗଲ ଯୁଗରେ ଆମରି ଭଳି ଖୋଜାମାନେ ଥିଲେ ସମ୍ରାଟଙ୍କର ଡାହାଣ ହାତ । ଆରବ ଖଲିଫାଙ୍କର ଜଣେ ଖୋଜା ସିନ୍ଧୁପ୍ରଦେଶ ଜୟ କରିଥିଲେ । ଯୁଗେ ଯୁଗେ ଖୋଜାମାନେ ଦିଗ୍‌ବିଜୟୀ ବୀର । ଖୋଜାଙ୍କ ତତ୍ତ୍ୱାବଧାନରେ ମୋଗଲ ହାରେମ ସୁରକ୍ଷିତ

ଥିଲ । ବେଗମମାନେ ଖୋଜାଙ୍କୁ ହାତକରି ସେମାନଙ୍କର ଗୋପନ କାର୍ଯ୍ୟ ହାସଲ କରୁଥିଲେ ।

ଆମେ ନିଜକୁ ହୀନ ମଣିବା ଆଦୌ ଉଚିତ ନୁହେଁ । ଆମେ ଶିଖଣ୍ଡୀ ହୋଇ ପାରିବାନି । ଚନ୍ଦ୍ରସେଣା ଭଳି ସବୁ ଅନ୍ୟାୟ ସହି ପାରିବାନି । ଆମେ ଭାରତର ସ୍ୱାଧୀନ ନାଗରିକ, ଆମର ଅଧିକାର ସାବ୍ୟସ୍ତ କରିବା । ଦାବୀ ହାସଲ ସକାଶେ ସଂଗ୍ରାମ କରିବା । ଘନଘନ କରତାଳି ଦେଇ ସମସ୍ତେ ବକ୍ତାମାନଙ୍କୁ ସମର୍ଥନ ଜଣାଇ ନିଜ ନିଜ ଥୋଡ଼ି ଅଣ୍ଡାଳିଲେ । ସତେ ଯେମିତି ଭୀଷଣ ଖୁଣ୍ଟୁଖୁଣ୍ଟୁ ସବୁରି ଥୋଡ଼ିରେ ଦାଢ଼ୀ ଗଜୁରି ଉଠିଛି । ସେମାନେ ହଠାତ୍ ପାଲଟି ଯାଇଛନ୍ତି ପୁରୁଷ ପୁଙ୍ଗବ ? କିନ୍ତୁ··· ସମସ୍ତେ ଜିଭ କାମୁଡ଼ି ଲଜରେ ମୁହଁପୋତି ବସିଲେ ।

ତାପରେ ସର୍ବସମ୍ମତି କ୍ରମେ ସରକାରଙ୍କୁ ସ୍ମାରକପତ୍ର ଦେବା ପାଇଁ ଯେଉଁସବୁ ପ୍ରସ୍ତାବମାନ ଗୃହୀତ ହେଲ ତହିଁର ବିବରଣୀ ଏମିତି—

ଆମକୁ ସ୍ୱାଧୀନ ଭାରତର ନାଗରିକ ଭାବରେ ସମସ୍ତ ମୌଳିକ ଅଧିକାର ଦିଆଯାଉ । ମଣ୍ଡଳ ତାଲିକାରେ ସାମିଲ କରି ବା ସଂଖ୍ୟାଲଘୁ ଭାବରେ ଗ୍ରହଣ କରି ଆମ ପାଇଁ ସ୍ଥାନ ସଂରକ୍ଷଣ କରାଯାଉ । ଆମକୁ ଉପଯୁକ୍ତ ସୁରକ୍ଷା ଯୋଗାଇ ଦିଆଯାଉ । ଦେଶର ପ୍ରତ୍ୟେକ ଦପ୍ତରରେ ଆମ ଭିତରୁ ଅନ୍ତତଃ ଜଣକୁ ଲେଖାଏଁ ସରକାରୀ ଚାକିରିରେ ନିୟୋଜିତ କରାଯାଉ । ଆମ ପାଇଁ ସ୍ୱତନ୍ତ୍ର ହିଞ୍ଜ୍‌ଡ଼ା ରାଜ୍ୟ ଗଠନ କରାଯାଇ ସେଠାରେ ଦେଶର ସବୁ ହିଞ୍ଜ୍‌ଡ଼ାଙ୍କୁ ଥଇଥାନ କରାଯାଉ । ଆମ ପାଇଁ ସ୍ୱତନ୍ତ୍ର ଶିକ୍ଷା ବ୍ୟବସ୍ଥା କରାଯାଉ । ସୈନ୍ୟବାହିନୀର ମୁଖ୍ୟ ଭାବରେ ଆମରି ଭିତରୁ ଜଣକୁ ନିଯୁକ୍ତି ଦିଆଯାଉ । ମହାଭାରତ ମହାସମରରେ ମହାରଥୀ ଭୀଷ୍ମ ଅସ୍ତ୍ରତ୍ୟାଗ କଲପରି ଆମକୁ ଦେଖିବା ମାତ୍ରେ ଶତ୍ରୁମାନେ ହୀନବଳ ହୋଇ ଏକ-ଦୁଇ କରି ଛତ୍ରଭଙ୍ଗ ଦେବାକୁ ବାଧ ହେବେ । ବିଭିନ୍ନ ଦେଶକୁ ରାଷ୍ଟ୍ରଦୂତ ଭାବରେ ଆମରି ଭିତରୁ ପଠାଯାଉ । ଆମେ ଅକ୍ଳେଶରେ ସେ ଦେଶର ସମସ୍ତ ଗୁପ୍ତ ସମ୍ବାଦ ସଂଗ୍ରହ କରି ଜଣାଇ ପାରିବୁ । ଆମ ଦେଶ ବିରୁଦ୍ଧରେ ଚାଲୁଥିବା ଷଡ଼ଯନ୍ତ୍ରକୁ ପଣ୍ଡ କରିଦେଇ ପାରିବୁ । ମହିଳା ହଷ୍ଟେଲ, କର୍ମଜୀବୀ ମହିଳା ନିବାସ, ନର୍ସିଂ ତାଲିମ କେନ୍ଦ୍ରମାନଙ୍କରେ ଆମକୁ ପରିଚାଳନା ଦାୟିତ୍ୱ ଦିଆଯାଉ ।

ମହିଳାମାନଙ୍କୁ କଣ୍ଟ୍ରୋଲ ଡ଼ିଲରସିପ୍ ଦିଆଗଲେ ଆମକୁ ବିକ୍ରି ଓଜନ ଦାୟିତ୍ୱରେ ରଖାଯାଉ । ମହିଳାଙ୍କ ପାଇଁ ଆଟି ପର୍ସେଣ୍ଟ ସ୍ଥାନ ସଂରକ୍ଷଣ

କରାଗଲେ ଆମ ପାଇଁ ତା ତଳକୁ ଟ୍ରେଣ୍ଟି ପର୍ସେଣ୍ଟ ସଂରକ୍ଷଣ ବ୍ୟବସ୍ଥା ରଖା-ଯାଉ । ବିଭିନ୍ନ ପଦବୀ ପୂରଣ ସମୟରେ ଆମ ଭିତରୁ ଅଗ୍ରାଧିକାର ଭିତ୍ତିରେ ନିଆଯାଉ । ଓ. ଏ. ଏସ, ଆଇ ପି. ଏସ, ଆଇ. ଏ. ଏସ ଆଦିରେ ଆମ ପାଇଁ ସ୍ୱତନ୍ତ୍ର କୋଟା ରକ୍ଷା ହେଉ । ପ୍ରତି ସହରରେ ଆମ ପାଇଁ ସ୍ୱତନ୍ତ୍ର କଲୋନୀ ବସାଯାଉ । ଆମ ପାଇଁ ଖାଦ୍ୟ-ବସ୍ତ୍ର-ବାସଗୃହ ବ୍ୟବସ୍ଥା କରାଯାଉ । ଇନ୍ଦୀରା ଆବାସ ଯୋଜନା, ନେହେରୁ ଯୁବ କେନ୍ଦ୍ରର ବିଭିନ୍ନ କାର୍ଯ୍ୟକ୍ରମ, ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାରେ ଆମ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉ । ଜନସଂଖ୍ୟା ନିୟନ୍ତ୍ରଣରେ ଆମେ ମୁଖ୍ୟ ଭୂମିକା ଗ୍ରହଣ କରୁଥିବାରୁ ଆମକୁ ପରିବାର କଲ୍ୟାଣ ବିଭାଗର ଉଚ୍ଚପଦବୀରେ ଅବସ୍ଥାପିତ କରାଯାଉ । ଦୁଇଟି ସନ୍ତାନ ଥାଇ ଯେଉଁମାନେ ଖାସି ହୁଅନ୍ତି ସେମାନଙ୍କୁ ଗ୍ରୀନ୍‌କାର୍ଡ଼ ମିଳୁଛି । ବିଭିନ୍ନ ପ୍ରକାର ସୁବିଧା ସୁଯୋଗ ମିଳୁଛି । ଏଣୁ ଆମ ପାଇଁ ଗୋଲଡ଼େନ ବା ଡାଇମଣ୍ଡ କାର୍ଡ଼ ଇସୁ କରାଯାଉ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ମହିଳାଙ୍କ ପ୍ରତି ଅସୌଜନ୍ୟ ପ୍ରଦର୍ଶନକାରୀଙ୍କ ପାଇଁ ଖାସ୍ ସ୍କ୍ୱାଡ଼ ଗଠନ କରିବାକୁ ଆହ୍ୱାନ ଦେଇଥିଲେ । କେନ୍ଦ୍ର ଏବଂ ସବୁରାଜ୍ୟ ସରକାରମାନେ ଆମ ପାଇଁ ସ୍ୱତନ୍ତ୍ର ସ୍କ୍ୱାଡ଼ ଗଠନ କରନ୍ତୁ । ଯିଏ ଆମକୁ ଥଟ୍ଟା କରିବ, ତାଚ୍ଛଲ୍ୟ ବ୍ୟବହାର କରିବ ତାଙ୍କର ଆଖି ଫୁଟାଇ ଦେବା ସକାଶେ ଆଇନ୍ ହେଉ । ବିଭିନ୍ନ ଋଣ ଯୋଜନାରେ ଆମକୁ ସୁବିଧା ଯୋଗାଇ ଦିଆଯାଉ । ଇଣ୍ଟରକାଷ୍ଟ ମ୍ୟାରେଜ ପାଇଁ ସରକାର ପ୍ରୋତ୍ସାହନ ଦେଉଛନ୍ତି । ଠିକ୍ ସେଇଭଳି ଆମକୁ ଯେଉଁମାନେ ବିବାହ କରିବେ ସେମାନଙ୍କ ପାଇଁ ଲୋଭନୀୟ ପୁରସ୍କାର ଘୋଷଣା କରାଯିବା ସହିତ ଆର୍ଥିକ ପ୍ରୋତ୍ସାହନ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଉ । ମହିଳା ସମୃଦ୍ଧି ଯୋଜନା ଭଳି ଆମ ପାଇଁ ସ୍ୱତନ୍ତ୍ର ହିଞ୍ଜଡ଼ା ସମୃଦ୍ଧି ଯୋଜନା କାର୍ଯ୍ୟକାରୀ କରାଯାଉ ।

ବିଧାନସଭା ଏବଂ ଲୋକସଭାର ପ୍ରତିନିଧିତ୍ୱ ପାଇଁ ଆମକୁ ସଂରକ୍ଷିତ କୋଟା ଦିଆଯାଉ । ଟିକେଟ ବାଣ୍ଟିଲା ବେଳେ ଋଣ ଦେଲାବେଳେ ଆମ ପ୍ରତି ଧ୍ୟାନ ଦିଆଯାଉ । ମନ୍ତ୍ରୀମଣ୍ଡଳରେ ଆମର ପ୍ରତିନିଧିଙ୍କୁ ସ୍ଥାନ ମିଳୁ । ଆସନ୍ତା ଦୁଇ ହଜାର ମସିହା ସୁଦ୍ଧା ସରକାର ଆମର ସମସ୍ତ ଦାବୀକୁ ନୀତିଗତ ଭାବେ ଗ୍ରହଣ କରି ପୂରଣ କରନ୍ତୁ । ନଚେତ୍ ସମଗ୍ର ଦେଶରେ ବ୍ୟାପକ ହିଞ୍ଜଡ଼ା ଆନ୍ଦୋଳନ ମୁଣ୍ଡଟେକି ଉଠିବ । ସମସ୍ତେ ଏକ ସ୍ୱରରେ କୁହ—

ଆମର ଦାବୀ ନ୍ୟାଯ୍ୟ ଦାବୀ; ପୂରଣ କର ପୂରଣ କର ।
ଟାଳଟୁଳ ନୀତି ଚଳିବ ନାହିଁ; ଆମ ମହାସଭା ମାନିବ ନାହିଁ ।

ଆମର ଦାବୀ ଗ୍ରହଣ କର; ନଚେତ୍ ସରକାର ହୁଅ ହୁସିଆର ।
ନି-ଭ-ହି-ମ; ଜିନ୍ଦାବାଦ ଜିନ୍ଦାବାଦ ।
ହିଞ୍ଜ୍ଡ଼ା ସମାଜ; ଅମର ହେଉ ।

ପ୍ରବଳ ଧ୍ୱନି, ପ୍ରତିଧ୍ୱନିରେ କମ୍ପି ଉଠିଲା ପରିବେଶ । ସଭପତି ଭଷିଲେ; "ଶାନ୍ତି...ଶାନ୍ତି...ଓମ୍ ଶାନ୍ତି" । ଆମେ ନୀରବ ହୋଇ ବସିବା ନାହିଁ । ଆନ୍ଦୋଳନକୁ ବ୍ୟାପକ କରିବା । ଆବଶ୍ୟକ ହେଲେ ସରକାରକୁ ଅଚଳ କରିଦେବା ।

ଶେଷରେ ସମସ୍ତେ ତାଳି, ହୁଳହୁଳି ମାଧ୍ୟମରେ ସଭପତିଙ୍କୁ ସମର୍ଥନ ଜଣାଇ କୁରୁଳି ଉଠିଲେ । କେତେକ ସଭପତି, ମୁଖ୍ୟବକ୍ତା, ମୁଖ୍ୟ ଅତିଥିଙ୍କୁ କୁଣ୍ଢାଇ ଧରି ସର୍ବାଙ୍ଗରେ ଚୁମା ଖାଇଲେ । କେତେକ ନିଜ ନିଜ ମଧ୍ୟରେ ଆଲିଙ୍ଗନାବଦ୍ଧ ହୋଇ ଚୁମା ଖିଆରେ ମାତିଲେ । ସର୍ବସମ୍ମତିକ୍ରମେ ସ୍ଥିର କରଗଲା ଯେ ସଭପତି ଓ ସମ୍ପାଦକ ଦୁହେଁ ଦାବୀପତ୍ର ନେଇ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କୁ ଭେଟିବେ । ଏହାପରେ ନିଖିଳ ଭରତ ହିଞ୍ଜ୍ଡ଼ା ମହାସଭର ବିଶେଷ ଅଧିବେଶନର ସମାପ୍ତି ଘୋଷଣା କରଗଲା ।



# ମଦମୃତ୍ୟୁ ଏବଂ ଅବକାରୀ ମନ୍ତ୍ରୀ

ହଠାତ୍ ରାଜ୍ୟରେ ମଦ୍ୟପାନ ଜନିତ ମୃତ୍ୟୁ ବିଭୀଷିକା ଘଟିଯିବା ଫଳରେ ଲୋକଙ୍କ ମଧ୍ୟରେ କୋକୁଆ ଭୟ ବ୍ୟାପିଗଲା । ଜଣେ ଅଧେ ନୁହେଁ ଏକାବେଳକେ ଶହଶହ ଲୋକ ବିଷାକ୍ତ ମଦ ପିଇ ସିଧା ସ୍ୱର୍ଗକୁ ଟିକେଟ କାଟିଲେ । ସେମାନଙ୍କ ସ୍ତ୍ରୀ, ପିଲାଙ୍କର ବିକଳ କାନ୍ଦଣା, ଅସହାୟ ଅବସ୍ଥା ଦେଖି ସବୁରି ମଗଜରେ ଚେତା ପଶିଲା । ଜନସଚେତନତା ଏତେ ବୃଦ୍ଧି ପାଇଲା ଯେ ଆଉ ବର୍ଣ୍ଣନା କରିବାର ଆବଶ୍ୟକତା ନାହିଁ । ସବୁଠି ଅବକାରୀ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ମଦବ୍ୟବସାୟୀ ଏବଂ ନେତାମାନଙ୍କୁ ସ୍ତୁତିମତ ଶୋଧଣା ଚାଲିଲା । ଦେଶୀ-ବିଦେଶୀ ସବୁ ମଦ ଦୋକାନ ବନ୍ଦ କରି ଦିଆଗଲା । ଯେଉଁ-ମାନେ ରାତି ଅଧିଆ ପନ୍ତପଟିଆ କାରବାର କଲେ ସେମାନେ ମଧ୍ୟ ନିସ୍ତାର ପାଇଲେ ନାହିଁ । ଲୋକେ ଯାହାକୁ ଯୋଉଠି ପାଇଲେ ମନଇଚ୍ଛା ଧୋଲେଇ କଲେ । ମାଇକିନାମାନେ ବି ସ୍ଲୋଗାନ ଦେଇ ରାସ୍ତାଘାଟରେ ବୁଲିଲେ । ରାଜ୍ୟକୁ ସଂପୂର୍ଣ୍ଣ ନିଶାମୁକ୍ତ କରିବା ପାଇଁ ଆବାଳ ବୃଦ୍ଧବନିତା ଶପଥ ନେଲେ । ବିଭିନ୍ନ ସ୍ଥାନରେ ସଭାସମିତି ଅନୁଷ୍ଠିତ ହେଲା । ମଦବିରୋଧୀ ଆନ୍ଦୋଳନ ତେଜିଲା ।

ଦେଶୀ-ବିଦେଶୀ ମଦ ଦୋକାନର ମାଲିକମାନେ ପ୍ରମାଦ ଗଣିଲେ । କ'ଣ କରିବେ ? ଲକ୍ଷାଧିକ ଟଙ୍କା ଯେ ପାଣିରେ ପଡ଼ିଗଲା । ନେତା ମନ୍ତ୍ରୀଙ୍କୁ ବଟି ଦେଇ ଅଳ୍ପଦିନରେ ଦ୍ୱିଗୁଣା ରୋଜଗାର କରିବା ପାଇଁ ଯେଉଁମାନେ ଆଶା ବାନ୍ଧିଥିଲେ ସେମାନଙ୍କୁ ନିଦ ହେଲା ନାହିଁ । କାରବାରତ ଠପ୍ । ଟଙ୍କା ଆସିବ କୁଆଡ଼ୁ ? କରଜ ଶୁଝିବେ କିପରି ? ଶେଷରେ "ଦେବିଶୀଶାମବିସସ", ଦେଶୀ ବିଦେଶୀ ମଦ ବିକାଳି ସହଯୋଗ ସମିତିର କବାଟକିଳା ଅଧିବେଶନ ବସିଲା । ନିଷ୍ପତି ନିଆଗଲା ଯେ ସେମାନେ ଯାଇ ଖୋଦ୍ ଅବକାରୀ ମନ୍ତ୍ରୀଙ୍କୁ ସାକ୍ଷାତ କରି ପ୍ରତିକାର ଲୋଡ଼ିବେ । ଯଦି ସବୁଜ ସଙ୍କେତ ମିଳିଗଲାତ ଭଲ, ନଚେତ୍ ନେତା, ମନ୍ତ୍ରୀ, ତାଙ୍କ ଚମଚାମାନଙ୍କୁ ଯେଉଁ ବିପୁଳ ଅର୍ଥ ଦିଆଯାଇଛି, ଯେତେ ପେଟି ମାଲ୍ ବରବାଦ୍ ହୋଇଛି ସବୁ ଆଦାୟ କରାଯିବ । ଆଗାମୀ

ନିର୍ବାଚନରେ ଏ ସରକାରଙ୍କୁ ସଂପୂର୍ଣ୍ଣ ବୈକଟ କରାଯିବ । ଏମାନଙ୍କ ସହିତ "ଘମକୁଶିମା", ଘରେଇ ମଦ କୁଟୀରଶିଳ୍ପ ମାଲିକମାନେ ମଧ୍ୟ ଯୋଗଦେବେ ବୋଲି ଘୋଷଣା କଲେ । ସମସ୍ତେ ଆକଣ୍ଠ ପିଇ କୁକୁଡ଼ା ଫଡ଼ିଆ ଝୁଣ୍ଟୁଝୁଣ୍ଟୁ ଆଗାମୀ କାର୍ଯ୍ୟପନ୍ଥା ସମ୍ପର୍କରେ ସବିଶେଷ ଆଲୋଚନା କଲେ । ଲଢ଼େଇ କରିବା ପାଇଁ କିଛି ଚାନ୍ଦା ମଧ୍ୟ ଆଦାୟ ହେଲା ।

ସର୍ବସମ୍ମତି କ୍ରମେ ମିଳିତ କାର୍ଯ୍ୟକାରୀ କମିଟିର ସଭାପତି ଥ୍ରି ଏକ୍ସ ରମ୍, ଉପସଭାପତି ବ୍ଲାକ୍‌ନାଇଟ୍ ଦାସ, ସମ୍ପାଦକ ହୁଇସ୍କି ମିଶ୍ର, ସଂଗଠକ ଚାଉଳି ମହାନ୍ତି, ମୁଖପାତ୍ର ମହୁଲି ଜେନା, କୋଷାଧ୍ୟକ୍ଷ ହାଣ୍ଡିଆ ମାଇତି, କାର୍ଯ୍ୟକାରୀ ସଭ୍ୟ ଗଞ୍ଜାପତି ସ୍ୱାମୀ, ଆପୁ ମଲ୍ଲିକ, ଖଜୁରୀ ବେହେରା ଆଦି ଅବକାରୀ ମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ବାହାରି ପଡ଼ିଲେ ।

ରାଜଧାନୀରେ ପହଞ୍ଚି ଦେଖିଲେ ଯେ ନିଶାମୁକ୍ତି ଆନ୍ଦୋଳନ ଜୋର-ସୋର୍‌ରେ ଚାଲିଛି । ଅଖିଆ ମହାପାତ୍ର, ନଖିଆ ତିହାଡ଼ି, ସଖୀ ମହାନ୍ତି, ସାକୀ ସାମନ୍ତରାଙ୍କ ନେତୃତ୍ୱରେ ବିରାଟ ପଟୁଆର ଚାଲିଛି । ସବା ଆଗରେ ଅବକାରୀ ମନ୍ତ୍ରୀ ବେକରେ ଫୁଲମାଳ ପକେଇ ଖୋଲା ଜିପ୍‌ରେ ଦୁଇହାତ ଯୋଡ଼ି ଷଣ୍ଢ ଟେକି ଛିଡ଼ା ହୋଇଛନ୍ତି । ଶୋଭାଯାତ୍ରାକାରୀମାନେ ଚିତ୍କାର କରି ମଦ ବିରୋଧୀ, ନିଶା ବିରୋଧୀ ସ୍ଲୋଗାନ ଦେଉଥାନ୍ତି । ପ୍ୟାରେଡ୍ ପଡ଼ିଆରେ ବିରାଟ ସାଧାରଣ ସଭା ଅନୁଷ୍ଠିତ ହେଲା । ରାଜ୍ୟକୁ ସଂପୂର୍ଣ୍ଣ ନିଶାମୁକ୍ତ କରିବାକୁ ମନ୍ତ୍ରୀ ଆହ୍ୱାନ ଦେଲେ । ଆୟୋଜକମାନେ ମଦ ବ୍ୟବସାୟୀଙ୍କର ଅଠାନବେ ପୁରୁଷଙ୍କୁ ଶ୍ରାଦ୍ଧ ଦେଲେ । ସଭା ପଛରେ ଛିଡ଼ା ହୋଇଥିବା 'ଦେବିଶୀଶୀ'ର କର୍ମକର୍ତ୍ତାମାନେ ରକ୍ତଚାଉଳ ଚୋବାଇଲେ । ଖାକିପିନ୍ଧା ଅଜାପୁଅମାନେ ନଥିଲେ ସେମାନେ ସେଇଠି କଞ୍ଚା ଖାଇ ଦେଇଥାନ୍ତେ । ସଭାପତିଙ୍କ ଇଙ୍ଗିତରେ ନୀରବ ରହିବାକୁ ବାଧ୍ୟ ହେଲେ । ଧୀର ପାଣି ପଥର କାଟେ । ସଭା ଶେଷ ହେଲା । ମନ୍ତ୍ରୀଙ୍କ ଜୟଧ୍ୱନିରେ ପରିବେଶ କମ୍ପିଲା । ମନ୍ତ୍ରୀ ବିଦାୟ ନେଇ ତାଙ୍କ ସରକାରୀ ବାସଭବନକୁ ଫେରିଲେ ।

ମଦ ବ୍ୟବସାୟୀ ସଂଘର ପ୍ରତିନିଧିମାନେ ପଛେ ପଛେ ଯାଇ ମନ୍ତ୍ରୀଙ୍କ ବାସଭବନରେ ହାଜର ହୋଇଗଲେ । ମନ୍ତ୍ରୀ ସେମାନଙ୍କୁ ଦେଖି ହସି ହସି ସ୍ୱାଗତ କଲେ ଏବଂ ଜଣକ ପକେଟରୁ ବ୍ଲାକ୍‌ନାଇଟ ନିପଲ୍‌ଟେ ଝିଙ୍କିନେଇ ଢକ୍‌ଢକ୍ ଗଳାଧଃକରଣ କରି ସୋଫା ଉପରେ ପୃଥୁଳ ଉଦର ଲେଟେଇ ହାକୁଟି ମାରିଲେ ବେଶ ଲମ୍ବା ଚଉଡ଼ା । ଚାଉଳି ମହାନ୍ତି ଓ ମହୁଲି ଜେନା ଦୁଦସ୍ତେ

କହି ପକାଇଲେ, "ଆଜ୍ଞା ! ଏସବୁ କ'ଣ ହେଉଛି ? ଆମେସବୁ ବଞ୍ଚିବୁ କିପରି ? ପାଞ୍ଚ ବର୍ଷ ପାଇଁ ଆଗୁଆ ବଟି ନେଲେ । ମାଲ ବି ନେଲେ । ଆପଣଙ୍କ ଦଳୀୟ କର୍ମୀ, ଚେଲା ଗ୍ରମଣ୍ଡା ବି ଯେତେବେଳେ ଯାହା ନେଲେ । ସୋନାଗାଛିରୁ ସୋନାଲିମାନଙ୍କୁ ଆଣି ଭେଟି ଦେଲୁ । ଅଥଚ ଦି'ଟା ବର୍ଷ ନପୂରୁଣୁ ଆମ କାରବାର '୦' ବନେଇବାର ଯୋଜନା କରି ପକାଇଲେ । ଏହା କ'ଣ ବିଶ୍ୱାସ ଘାତକତା ନୁହେଁ ?"

ବ୍ଲାକନାଇଟ୍ ଦାସ କହିଲେ, "ଦୋକାନ ବନ୍ଦ୍ କରିବାକୁ ନୋଟିସ ଜାରି କରଯାଇଛି । କିଛି ଦୋକାନରେ ଲୋକେ ନିଆଁ ଲଗେଇ ଦେଇଛନ୍ତି । ଆମେ ଏବେ କ'ଣ କରିବୁ ? ଆପୁ ମଳିକ କାନମୂଳ କୁଣ୍ଡେଇ କୁଣ୍ଡେଇ କହିଲେ, ଆଜ୍ଞା, ଆମର ଯାହା ଲୋକସାନ୍ ହେଲା ସେସବୁ ଭରଣା କରିବା କିପରି ? ଆମେ ଅଧିକାଂଶ ଜମି ବନ୍ଧା ଦେଇ, କରଜ ଆଣି ବ୍ୟବସାୟରେ ମାତିଥିଲୁ । ଭେକାଳ ବୁଡ଼ିଗଲା । କିଛି ଗୋଟେ ଉପାୟ ବତାନ୍ତୁ । ନଚେତ୍ ଭସିଯିବୁ ।

ମନ୍ତ୍ରୀ ଉଦରରେ ହାତମାରି ହୋଃ... ହୋଃ... ହସି ଉଠିଲେ । ଜଣକ ପକେଟରୁ ଅଫିସରସ୍ ଚଏସ୍‌ଟେ କାଢ଼ି ଏକା ନିଃଶ୍ୱାସକେ ପିଇଗଲେ । ତାପରେ ସିଗାରେଟରେ ନିଆଁ ଧରେଇ ମୋଆଏ ଧୂଆଁ ଗ୍ରୁଡ଼ି କହିଲେ, "କୁଛ ପରଓ୍ୱା ନାହିଁ । ସବୁ ଠିକ୍ ହୋଇଯିବ । ତମେ ସବୁ ବୁଦ୍ଦୁ । ଏଇ ସାମାନ୍ୟ କଥାରେ ଅତର୍ଛା ହାଲୁର ହୋଇ ପଡ଼ିଲେ ଚଳିବ ? ଧୈର୍ଯ୍ୟ ଧର । ଅପେକ୍ଷା କର । ସମୟ ଆସିବ । ଅଲବତ୍ ଆସିବ । ସବୁ ଠିକ୍ ହୋଇଯିବ । ସେତେ-ବେଳେ ମନେ ପକାଇବ ମୋ କଥାର ଗୁରୁତ୍ୱ । ୟେ ପଗ ଗଣତନ୍ତ୍ରର ଦେଶ ? ଯେତେବେଳେ ଯେଉଁ ହାଓ୍ୱା ବହୁଥିବ ସେଇ ଅନୁସାରେ କାମ ନକଲେ ଠକି-ଯିବାକୁ ହେବ । କଳେବଳେ ଅବା କଉଶଳେ ଜନତାଙ୍କୁ ଭୁଟେଇ, ହାତେଇ, ଅବା ନୋଟ ଦେଇ ଆମକୁ ଭୋଟ ସଂଗ୍ରହ କରିବାକୁ ହୋଇଥାଏ । ଏ ଦେଶର ଲୋକେ ଭରି ଦୟାଳୁ, ଧର୍ମଭୀରୁ ଏବଂ ଭୁଲାମନ । ଯେତେବଡ଼ ଘଟଣା, ଦୁର୍ଘଟଣା ଘଟୁନା କାହିଁକି କିଛିଦିନ ପରେ ସବୁ ଭୁଲିଯାଆନ୍ତି । ଯୋଉମାନଙ୍କୁ ଦେଖି ନାକ ଟେକୁଥାନ୍ତି, ଦୂରଦୂର କହୁଥାନ୍ତି, ବେଳ ପଡ଼ିଲେ ସେଇ ମାନଙ୍କୁ ଭୋଟ ଦେଇ ମୁଣ୍ଡରେ ବସାଇ ବୁଲନ୍ତି । ତମର ସବୁ ମନେ ଅଛି କି ନାହିଁ ? ଗତ ଥର ଲୋକେ ମୋ ଶବ ପୋଡ଼ିଥିଲେ । କଳା ପତାକା ଦେଖାଇଥିଲେ । କେହି ଜଣେ ହେଲେ ମୋତେ ଭୋଟ୍ ଦେଇ ନଥିଲେ । ଏଥର କ'ଣ ହେଲା ? ମୁଁ ସର୍ବାଧିକ ଭୋଟ ପାଇ ରେକର୍ଡ଼ କଲିଟି ? ବେଲୁଆଟା ମସ୍ତବଡ଼ ଭୁଲ କରିଦେଲା । ଯାହା ଫଳରେ ଆମେ ସମସ୍ତେ ହଟହଟା ହେଉଛୁ । ମୁଖ୍ୟମନ୍ତ୍ରୀ

ତଦନ୍ତ କମିଶନଟେ ବସାଇ ଦେଇଛନ୍ତି । ବିରୋଧୀଦଳ ବାଲା ଆମ ଇସ୍ତଫା ଅଡ଼ି ବସିଛନ୍ତି । ଏଣେ ଜନସଚେତନତା ବୃଦ୍ଧି ପାଇଛି । ଏଣୁ ଲୋକଙ୍କୁ ଭୁଲେଇ ବାହାବା ନେବା ପାଇଁ ଆମେ ଏମିତିକା କିଛି ପଦକ୍ଷେପ ନେବାକୁ ବାଧ୍ୟ ହୋଇଛୁ । କିହୋ ମଦ ବିନା କ'ଣ ରାଜ୍ୟ ଚାଲିପାରିବ ? ନା ଲୋକେ ମଦ ହାଣ୍ଡିଆ ଗଞ୍ଜେଇ ଅଫିମ ନ ଖାଇଲେ ଆମକୁ ସହଜରେ ଭୋଟ ମିଳିବ ? କିଛିଦିନ ବିତିଗଲେ ଲୋକେ ସବୁ ଭୁଲିଯିବେନି ? ବରଂ ତମେ ସବୁ ଗୋଟିଏ କାମ କର ।

ସମସ୍ତେ ମନ୍ତ୍ରୀଙ୍କ ମୁହଁକୁ ଉତ୍ସୁକତାର ସହିତ ଅପଲକ ଚାହିଁ ରହିଲେ । ମନ୍ତ୍ରୀ ମହୋଦୟ ପୁଣି ଏକ ସିଗାରେଟରେ ନିଆଁ ଧରେଇ କହିଲେ । "ବୁଦ୍ଧି ଥିଲେ ଉପାୟ ବଳେବଳେ ଆସେ । କାଇଦା ନକଲେ ଫାଇଦା ମିଳେନା । ତମେ ସବୁ ଏଣିକି ବୋତଲ ବଦଳରେ ପଲିଥିନ୍ ପ୍ୟାକ୍‌ରେ ମାଲ ବଜାରକୁ ଛାଡ । ଉପରେ "ଶକ୍ତି ସଂଜୀବନୀ" ଲେବଲ ମାରିଦିଅ । ସାମ୍ନା ଭଳି ପାନ ଦୋକାନ ଠାରୁ ଆରମ୍ଭ କରି ଡାଲି ଚାଉଳ, ଷ୍ଟେସନାରୀ ଦୋକାନ ମାନଙ୍କରେ ଟଙ୍ଗେଇ ଦିଅ । ଏ ସଂଜୀବନୀ ନିୟମିତ ସେବନ କଲେ ଲୋକେ ବେଶୀ ଦିନ ବଞ୍ଚି ପାରିବେ । ସୁସ୍ଥ, ନୀରୋଗ ରହିବେ ବୋଲି ଏକ ପ୍ରଚାର ପତ୍ର ଛପାଇ ବାଣ୍ଟି ଦିଅ । ଯେଉଁ ମାନଙ୍କର ଦୋକାନ ଜଳି ଯାଇଛି ସେମାନଙ୍କୁ କ୍ଷତି ପୂରଣ ମିଳିଯିବ । ଆଉ ଚିନ୍ତା କ'ଣ ?? କର୍ମକର୍ତ୍ତାମାନେ ମନ୍ତ୍ରୀଙ୍କୁ ଆଉ ଦୁଇଟି ଗୌତମ୍ ବ୍ରାଣ୍ଡ ଦେଇ ବିଦାୟ ନେଇ ଫେରିଲେ ।

କିଛିଦିନ ପରେ ଖବର କାଗଜରେ ପ୍ରକାଶ ପାଇଲା ଯେ ସରକାର ଦେଶୀ-ବିଦେଶୀ ମଦ ଦୋକାନ ଦ୍ୱିଗୁଣିତ କରିବାକୁ ନିଷ୍ପତ୍ତି ନେଇଛନ୍ତି । ଖୋଦ୍ ଅବକାରୀ ମନ୍ତ୍ରୀ ବିଧାନସଭାରେ ବିବୃତି ଦେଇଛନ୍ତି ଯେ ଦେଶୀ ରନ୍ଧା ମଦରେ ପ୍ରଚୁର ଭିଟାମିନ ରହିଛି । ଏହାକୁ ନିୟମିତ ସେବନ କଲେ କିଛି କ୍ଷତି ନାହିଁ । ବରଂ ଏହା ଶରୀରର ହିତ ସାଧନ କରିବ । କର୍ମକର୍ତ୍ତା ମାନଙ୍କର ଖୁସି ଆଉ କହିଲେ ନସରେ । ମନ୍ତ୍ରୀଙ୍କୁ ବଧେଇ ଜଣେଇବା ପାଇଁ ଏବଂ ଅଧିକ ମଦ ଦୋକାନ ଖୋଲିବା ସକାଶେ ଲାଇସେନ୍‌ସ ପାଇବା ପାଇଁ ମାଲ ଧରି ପହଞ୍ଚିଗଲେ ।

●

# ମଣ୍ଡଳ କମିଶନ ଜିନ୍ଦାବାଦ

ଯୋଉଦିନ ମଣ୍ଡଳ କମିଶନ୍‌ଙ୍କ ରିପୋର୍ଟକୁ ଭିତ୍ତି କରି ଜାତିଗତ ସଂରକ୍ଷଣ ନୀତି ପ୍ରଚଳନ କରିବାକୁ ପ୍ରଧାନ ମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଘୋଷଣା କଲେ, ସେଦିନ ଆକାଶଟା ଅତ୍ୟଧିକ ଉତପ୍ତ ହୋଇ ଭାରତୀୟଙ୍କ ମୁଣ୍ଡ ଉପରେ ଫାଟି ପଡ଼ିଲା । ନ୍ୟାସନାଲ ଫ୍ରଣ୍ଟ ସରକାରଙ୍କୁ ରାହୁ-କେତୁ ଦୁଇପଟୁ ଗିଳିବାକୁ ଆରମ୍ଭ କଲେ । ମଝି ଅଂଶ ଡହଳ ବିକଳ ହୋଇ ଛଟପଟ ହେଉଥାଏ । ଚାଲିଲା ଭଙ୍ଗାରୁଜା, ପୋଡ଼ାଜଳା, ମାରପିଟ୍, ହାଣକାଟ, ଆନ୍ଦୋଳନ, ଅନଶନ । ଦେଶର ଯୁବଶକ୍ତି ଆଗ୍ନେୟଗିରିର ଲାଭା ପରି ବିସ୍ଫୋରିତ ହୋଇ ଉଠିଲା । ବାରମ୍ବାର ବିଶ୍ୱନାଥ ପ୍ରତାପ ସିଂହଙ୍କ ନକଲି ଶବ ସତ୍କାର କରାଗଲା । କେହି କେହି କହିଲେ ବିଚରା ମାଣ୍ଡି ରାଜାଙ୍କ ଗଣ୍ଡିମୁଣ୍ଡ ଅଲଗା ହୋଇଗଲା । ସେ ଆଉ ରାଜନୀତି କରିପାରିବେ ନାହିଁ । ଲୋକେ ତାଙ୍କୁ ଭୋଟ ଦେବେ ନାହିଁ ।

ହିଂସାକାଣ୍ଡ, ମାରଧର, ସରକାର ବିରୋଧୀ ଆନ୍ଦୋଳନ କ୍ରମେ ବଡ଼ ବଡ଼ ସହରରୁ ନିପଟ ମଫସଲ ଗାଁ ଆଡ଼କୁ ମୁହେଁଇଲା । ସହରିଆ ଶିକ୍ଷିତ, ଅଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ ପ୍ରାୟ ସମାନ କହିଲେ ଚଳେ । ଯେ କୌଣସି କଥାର ଅର୍ଥ ବଡ଼ବଡ଼ିଆ ବାବୁମାନେ ବୁଝିବା ଆଗରୁ ରିକ୍‌ସାବାଲା, ମେହେନ୍ତର ମାନେ ବୁଝିପକାନ୍ତି । ପାନ ଗୁମୁଟି, ଚା' ଦୋକାନରେ ଆଲୋଚନା ଚାଲେ । କିନ୍ତୁ ; ଗାଁ ଗହଳରେ ଅପନ୍ତରା ପରିବେଶରେ ରହୁଥିବା ଅଣପାଠୁଆ ଚଷାଭୂଷାଏ ସହରିଆ କଥାର ଅର୍ଥ ସହଜରେ ଠଉରେଇ ପାରନ୍ତି ନାହିଁ । ମୁଣ୍ଡ ଝାଳ ତୁଣ୍ଡରେ ଦେଇ ଢୋକେ ପିଇ, ଦଣ୍ଡେ ଜୀଇଁ ଆଣ୍ଠୁ ଅଲୁରା ଗାମୁଛା ପିନ୍ଧା ମରହଟୀ ଗାଉଁଲି ଲୋକ ମଧ୍ୟ ମଣ୍ଡଳ କମିଶନ କଥା ବୁଝି ପକାଇଲେ । ଏହା କ'ଣ କମ୍ ଆଶ୍ଚର୍ଯ୍ୟର କଥା ? କିଏ କହିଲା ଶଳା ମଣ୍ଡଳ ଭୂତ ଭାରତକୁ ଗ୍ରାସିଛି । ଯୋଉଠି ତା ହାତ୍ତା ବଢ଼ୁଛି ସବୁ ଧ୍ୱଂସ କରି ଦେଉଛି । ବିହାରୀ ବୋପା

ମଣ୍ଡଳ କେବେ ଠାରୁ ମରି ଭୂତ ହୋଇ ଏତେକାଳ କୋଉଠି ଲୁଚିଥିଲା ? ଏଇକଥା ଜାଣିବାକୁ ସମସ୍ତେ ବ୍ୟାକୁଳ ହୋଇ ପଡ଼ିଲେ । ଏଡ଼େ ପରପଞ୍ଚିଆ ଲୋକଟେ ? ବଞ୍ଚିଥିଲା ବେଳେ ତ କାହାରି କିଛି ଉପକାର କରି ପାରିଲାନି । ମରିବାର ଏତେଦିନ ପରେ ଆସି ଭାରତରେ ଏକ ପ୍ରକାର ଲଙ୍କାକାଣ୍ଡ କରି ବସିଛି । ତାକୁଇ କେନ୍ଦ୍ର କରି ସବୁଠି ମଣିଷ ମଣିଷ ମଧ୍ୟରେ ଘୋଇ ଖୋଳା-ଖୋଳି, ଗାଳି, ଆତ୍ମହତ୍ୟାର ସୁଅ ଛୁଟି ଚାଲିଛି । ତା କବଳରୁ କାହାରି ମୁକ୍ତି ନାହିଁ । ରାଜନୀତିରେ ଅଦଳ ବଦଳ ଲାଗି ରହିଛି ।

ଗାଁ ଠାରୁ ସହରଯାଏ ଯେତେ ତଫସିଲଭୁକ୍ତ ଜାତି, ଉପଜାତି, ଅନୁ-ସୂଚିତ ଜାତି, ଜନଜାତି, 'ବନଜାତି, ଅଣଜାତିର ଲୋକେ ଅଛନ୍ତି, ସବୁରି କଣ୍ଠରେ ଗୋଟିଏ ସ୍ୱର ''ମଣ୍ଡଳ କମିଶନ ଜିନ୍ଦାବାଦ । ଭି. ପି. ସିଂହ ଯୁଗ୍ ଯୁଗ୍ ଜୀଓ'' । ଅବଶ୍ୟ କେହି କେହି କହି ପାରନ୍ତି ସ୍କୁଲ କଲେଜରେ ପଢ଼ୁଥିବା ସବୁ ଛାତ୍ରଛାତ୍ରୀ ଆନ୍ଦୋଳନରେ ଭାଗ ନେଇଛନ୍ତି । ଏକଥା ସତ । କାରଣ ଗୋଠ ଖଣ୍ଡିଆ ହେଲେ ଯେ ଲାଙ୍ଗୁଡ଼କଟା ଯୋଗ ରହିଛି । ମଣ୍ଡଳ କମିଶନକୁ ନେଇ ଧଣ୍ଡପୁର ଗ୍ରାମରେ ଯେଉଁ କାଣ୍ଡ କାରଖାନା ଘଟିଗଲା ତାହା ଶୁଣିଲେ ଆତ୍ମା ଥଣ୍ଡା ହୋଇଯିବ ।

ଧଣ୍ଡପୁର । ବିରାଟ ବସ୍ତି ଗାଁ । ଅଗାଧୁ ମିଶ୍ରେ ଆଖପାଖ ଅଞ୍ଚଳର ଜଣେ ନାମଜାଦା ଲୋକ । ଧଣ୍ଡପୁର ଲଗାତ୍ ଦଶଖଣ୍ଡ ମୌଜାରେ ଅଗାଧୁନନା ବେଶ୍ ନାଁ କମେଇଛନ୍ତି ନିଜର ଜିଦ୍‌ଖୋର ପ୍ରକୃତି ପାଇଁ । ଯାହା ବୁଝିଥିବେ ସେୟା । ଥରେ ରାଗିଲେ ସେ ଆଉ କାହାରି ନୁହଁନ୍ତି । ଜମିଦାରୀ ସିନା ଚାଲି ଯାଇଛି । ହେଲେ ବିଳାସବ୍ୟସନ, ଚଳଣି ଏପର୍ଯ୍ୟନ୍ତ ଅପରିବର୍ତ୍ତନୀୟ ହୋଇ ରହିଛି । ସେଦିନ ହଠାତ୍ ଚଉପାଢ଼ିରେ ବସି ମିଶ୍ରେ ରାଗ ତମତମ ହୋଇ ଫାଟି ପଡ଼ିଲେ । ପାଚିଲା ଲୁହାଖଣ୍ଡ ପରି ଲାଲ ହୋଇଗଲା ତାଙ୍କ ଚେହେରା । ଆଖି ଦୁଇଟା ଜଳୁଥିଲା ନିଆଁହୁଳା ପରି । ପାଖରେ ପାଇଥିଲେ ହୁଏତ ନାଣ୍ଡୁ ବାରିକ ପାଣ୍ଡୁଆ ଧୋବାଙ୍କୁ କଞ୍ଚା ଚୋବେଇ ଦେଇଥାନ୍ତେ । କି ଯୁଗ ଆସି ପହଞ୍ଚିଲା ସତରେ ?

ସାତପୁରୁଷରୁ ଚଳି ଆସୁଥିବା ସାଆନ୍ତିଆ ପ୍ରଥା ହଠାତ୍ ଠପ୍ ହୋଇ ଗଲା । ବାପ-ଡଉଦ ପୁରୁଷ ସାଆନ୍ତ ଘରେ ଆସି ସେବା କରୁଥିଲେ । ନାଣ୍ଡୁ ବାରିକ ସିଧା ମନା କରି ଦେଲା । କ୍ଷର କରିବା ପାଇଁ ମିଶ୍ରଙ୍କ ପିଣ୍ଡା ତଳକୁ ଆସି ପାରିବନି । ପାଣ୍ଡୁଆ କହିଲା ସେ ଆଉ ଲୁଗା କାଚିବ ନାହିଁ । ଯେ ଦାଣ୍ଡ

ଅପମାନ ? ତାଙ୍କ ସାମନା ସାମନି ହେବାକୁ ଯେଉଁମାନେ ଭୟରେ ଥରୁଥିଲେ, ସେମାନେ ମୁହେଁ ମୁହେଁ ଜବାବ୍ ଦେଇଗଲେ । ପାଖରେ ବସିଥିବା ଗାଲୁ ମାହାନ୍ତି କହିଲ, "ସାଆନ୍ତେ ! ନାଣ୍ଟୁ ପୁଅ ଗେଣ୍ଟୁଆ ପଘ ଆଉ କିଛିଦିନ ପରେ ବି: ଡ଼ି: ଓ: ହେବ ? ଦରମା ସହିତ କେତେ ଉପୁରି ଝିଙ୍କି ଆଣିବ । ନାଣ୍ଟୁ ଏବେଠାରୁ ବଡ଼ଲୋକ ହେବାର ସ୍ୱପ୍ନ ଦେଖିଲଣି । ସେ ଆଉ କ୍ଷର କରିବା ଭଳି ଗ୍ଲେଟ କାମ କରିବ ? ପାଣ୍ଟୁଆ ଝିଅ ଚମ୍ପେଇତ କିଲଟର ହେବ । ସେ ପଘ ଓଏସ୍ ନା ଆଏସ୍ କ'ଣ ଗୋଟାଏ ଦେଇଛି । କୋଟାରେ ଥିବା ଗୋଟିଏ ସିଟ୍ ତା ବେକରେ ଲକେଟ୍ ହୋଇ ଝୁଲୁଛି । ସେ ଲୁଗା କାଚିବ କାହିଁକି ? ସୋଡ଼ାପାଣି, ସାବୁନ ପେଣରେ ଚକଟି ହେବ କାହିଁକି ? ଏଣିକି ବାବୁ ହେବ, ବାବୁ । ଧୋବ ଫରଫର ଲୁଗା ପିନ୍ଧି ଝିଅ ସାଥିରେ ଗାଡ଼ିରେ ବୁଲିବ ।

ଏତେବେଳକେ ମିଶ୍ରଙ୍କ ମଗଜରେ ପ୍ରକୃତ କଥାଟି ଢୁକିଲ । ନିହାତି ଇତର, ଗ୍ଲେଟ ଜାତିର ଲୋକଙ୍କୁ ମୁଣ୍ଡରେ ବସେଇ ସରକାର ଅନ୍ୟମାନଙ୍କୁ ଗୁବୁକ ମାରି ତାଥେଇ ତାଥେଇ ନଚଉଛନ୍ତି । ଏଥିରେ ଦେଶ ଆଗେଇବ ନା ରସାତଳକୁ ଡୁବିଯିବ ? କିହୋ ? ପ୍ରତିଭାର କ'ଣ କିଛି ମୂଲ୍ୟ ନାହିଁ ? ଫାଷ୍ଟ ଡିଭିଜନରେ ପାଶ୍ କରି ମଧ୍ୟ ଅନ୍ୟ ଜାତିର ପିଲାଏ ବେକାର । ଅଥଚ ଏଇ ଥାର୍ଡ଼ ଡ଼ିଭିଜନିଆଁଙ୍କ ପାଇଁ କୋଟାରେ ସବୁ ଗ୍ଭକିରି ଥୁଆ । ବିଜ୍ଞାନରେ କମ୍ ନମ୍ବର ରଖି ତାଙ୍କ ପିଲ ଡାକ୍ତରୀ ପଢ଼ିବେ । ଗଣିତରେ ଫେଲ ହୋଇ ଇଞ୍ଜିନିୟର ହେବେ । ଉଚ୍ଚ ଜାତିର ପିଲେ ଭଲ ନମ୍ବର ରଖି ଫାଷ୍ଟ ଡିଭିଜନରେ ପାଶ୍ କରି ମଧ୍ୟ ଯୋତା ପଲିସ୍ କରିବେ । ପିଅନ ଗ୍ଭକିରିକୁ ବି ଭଜନ ହେବେ ନାହିଁ । ଆଦିବାସୀ ସ୍କୁଲର ଶିବଧନୁ ଭଙ୍ଗା ପ୍ରସଙ୍ଗ ପରି ଶେଷରେ ଦେଶର ମେରୁଦଣ୍ଡଟା ଭାଙ୍ଗିଯିବନି ? ନେତା ମନ୍ତ୍ରୀଙ୍କର ତ ପାଠ କମ୍ । ମଗଜରେ କିଛି ନାହିଁ । ଭୋଟ ପାଇବା ପାଇଁ ସବୁ ପ୍ରକାର ତୋଷଣ ନୀତି ନ କରିବେ କେମିତି ?

ମିଶ୍ରେ ଭାବୁଥାନ୍ତି । ସରକାର ଜାଣିଶୁଣି ଏଭଳି କାଣ୍ଡ ସୃଷ୍ଟି କଲେ କାହିଁକି ? ଉଚ୍ଚ ଜାତିରେ ଜନ୍ମ ହେବାଟା କ'ଣ ମହାପାପ ? ସେମାନଙ୍କ ପାଇଁ କିଛି ସୁବିଧା ନାହିଁ ? ମଣିଷ କ'ଣ ଜନ୍ମ ହେବା ସମୟରେ ତା ପିଠିରେ ଜାତି ଗୋତ୍ରର ଷ୍ଟାମ୍ପ ବାଜିଥାଏ ? ସବୁ ମଣିଷ ଯଦି ସମାନ, ସମ୍ବିଧାନ ଅନୁସାରେ ସମସ୍ତେ ସମାନ ଅଧିକାର ପାଇବାକୁ ହକ୍‌ଦାର । ତେବେ ଏ

ପାତର ଅନ୍ତର କାହିଁକି ? ସରକାର ସଂଖ୍ୟାଲଘୁ, ଜନଜାତି-ବନଜାତି ସୃଷ୍ଟି କଲେ କାହିଁକି ? ଗାନ୍ଧୀ ମହାତ୍ମା କ'ଣ ଏଇଆ ଚାହିଁଥିଲେ ?

ଏଇ ସମୟରେ ଏକ ବିରାଟ ଶୋଭଯାତ୍ରା ମିଶ୍ରଙ୍କ ଘର ଆଗ ଦେଇ ଆସିଲା । ନାଣ୍ଡୁ ପୁଅ ଏବଂ ପାଣୁଆ ଝିଅ ଆଖପାଖ ଗାଁର ସବୁ ତାଲିକାଭୁକ୍ତ ଜାତିର ଯୁବକ ଯୁବତୀଙ୍କୁ ନେଇ ଏଇ ଶୋଭଯାତ୍ରା କରଉଥାନ୍ତି । "ମଣ୍ଡଳ କମିଶନ ଜିନ୍ଦାବାଦ୍"ଧ୍ୱନିରେ କମ୍ପି ଉଠୁଥାଏ ଗଗନ ପବନ । ମିଶ୍ରଙ୍କ ପୁଅ ଅନ୍ୟ ଦଳଙ୍କୁ ନେଇ ବିପରୀତ ଦିଗରୁ ଏକ ଶୋଭଯାତ୍ରାରେ ଆସି ସେଇଠି ପହଞ୍ଚିଗଲେ । ସେମାନେ କହୁଥାନ୍ତି "ମଣ୍ଡଳ କମିଶନ ମୁର୍ଦ୍ଦାବାଦ୍" । ଜିନ୍ଦାବାଦ-ମୁର୍ଦ୍ଦାବାଦ୍, ମୁର୍ଦ୍ଦାବାଦ୍-ଜିନ୍ଦାବାଦ୍ ମଧ୍ୟରେ ଟଣାଓଟରା ଧସ୍ତାଧସ୍ତି କଲର ଧରାଧରି ମଧ୍ୟ ପରସ୍ତେ ଅଭିନୀତ ହୋଇଗଲା ।

ନାଣ୍ଡୁଆ ପୁଅ ଦଳରେ ଥିବା ଟୋକା ଟୋକୀଏ ସବୁ ଆର୍ଦ୍ର ଡ଼ିଭି-ଜନିଆ । ମିଶ୍ର ପୁଅ ଅଭଲ ନମ୍ବର ବ୍ରାହ୍ମଣ, କରଣ, ଖଣ୍ଡାୟତ ଜାତିର ଫାଷ୍ଟ ଡ଼ିଭିଜନିଆ ପିଲାଙ୍କୁ ଜୁଟାଇ ଆଣିଥାଏ ।

ଦୁଇଦଳଯାକ ମିଶ୍ରଙ୍କ ଘର ସାମନା ପଡ଼ିଆରେ ସଭା କଲେ । ସରକାରୀ ପିଲାଏ କହିଲେ, "ଧନ୍ୟ ମଣ୍ଡଳେ, ତମକୁ ଶତ ଧନ୍ୟବାଦ । ଏତେ ଦିନେ ସରକାର ତମରି କଥାରେ ଦଳିତ ଅବହେଳିତଙ୍କ ଦୁଃଖ ବୁଝିପାରିଲେ । ବିରୋଧୀ ଗୋଷ୍ଠୀବାଲାଏ ଗଳା ଫଟାଇ ଚିତ୍କାର କଲେ ମଣ୍ଡଳ କମିଶନ ମୁର୍ଦ୍ଦାବାଦ । ପ୍ରଧାନମନ୍ତ୍ରୀଙ୍କ ଶବଦାହ କଲେ । ସ୍ଥାନ ସଂରକ୍ଷଣକୁ ନେଇ ଦେଶଟା ଯାକରେ ନିଆଁ ଜଳିଲା । ଭିକାରୀ, ଅନ୍ଧ, ଛୋଟା, କେମ୍ପା, ହିଞ୍ଜଡ଼ା, ବେଶ୍ୟା-ମାନେ ବି ଏକଜୁଟ ହୋଇ ଆଗେଇ ଆସିଲେ ଦାବୀପତ୍ର ଧରି । ସମସ୍ତଙ୍କର ସେଇ ଏକା କଥା । ଆମର ଦାବୀ ପୂରଣ କର । ଆମ ପାଇଁ ସ୍ଥାନ ସଂରକ୍ଷଣ କର ।

ଧଣ୍ଡପୁର ଗାଁର ଅବସ୍ଥା ଅସମ୍ଭାଳ ହୋଇ ପଡ଼ିଲା । ପୋଲିସ ଆସିଲା, ଲାଠି ଚାଲିଲା । ଲୁହାବୁହା ଗ୍ୟାସ୍ ଛଡ଼ାଗଲା । ସରକାର ନିଜ ଜିଦ୍‌ରେ ଅଟଳ ରହିଲେ । ତୀବ୍ର ବିରୋଧ ସତ୍ତ୍ୱେ ସଂରକ୍ଷଣ ନୀତି କାର୍ଯ୍ୟକାରୀ ହେଲା । ଏଇ ମଉକାରେ ବହୁଲୋକ ସାର୍ଟିଫିକେଟ ବଦଳେଇ, ଜାତି ବଦଳେଇ ଚାକିରୀ କରେଇ ଦେଲେ ନିଜର ପୁଅ ଝିଅମାନଙ୍କୁ । ଟଙ୍କା ଖର୍ଚ୍ଚ କଲେ ଭାରତ ବର୍ଷରେ କ'ଣ ନହୋଇ ପାରେ ?

ମିଶ୍ରେ କ'ଣ କରିବେ କିଛି ଠିକ୍ କରି ପାରିଲେନି । ପୁଅମାନେ ପାଠ ପଢ଼ି ଉଚ୍ଚଶିକ୍ଷିତ ହୋଇ ବେକାର । ସେମାନେ କ'ଣ ଆଉ ହଳ ଧରିବେ ? ଯଜମାନୀତ ଗଲାଣି କୋଉକାଳୁ । ଚାକିରି ନପାଇଲେ ରୋଜଗାର ନକଲେ ଚଳିବେ କିପରି ? ଶେଷରେ ଅନ୍ୟ ଉପାୟ ନପାଇ ଗାଲୁଆ ମହାନ୍ତିଙ୍କ ଢାଲୁଆ ବୁଦ୍ଧିରେ ପଡ଼ି ଏମ: ଏଲ: ଏ:ଙ୍କୁ ଧରାଧରି କରି ସାର୍ଟିଆ ଉଠେଇ ଦେଇ ଜାତି ବଦଳେଇ ପୁଅମାନଙ୍କୁ ଯଥାକଥା ଗୋଟିଏ ଗୋଟିଏ ଚାକିରି ଧରାଇ ଦେଲେ । ନିଜର ଇଚ୍ଛା ବିରୋଧରେ କହିବାକୁ ବାଧ୍ୟ ହେଲେ "ମଣ୍ଡଳ କମିଶନ ଜିନ୍ଦାବାଦ୍" ।



# ଆମ ପାଇଁ ସ୍ଥାନ ସଂରକ୍ଷଣ କରାଯାଉ

ଶିକ୍ଷା, ଚିକିତ୍ସା, ଋଣ ଗ୍ରହଣ, ପ୍ରମୋଶନ କ୍ଷେତ୍ରରେ ଆଦିବାସୀ, ହରିଜନ, ସଂଖ୍ୟାଲଘୁ ସମ୍ପ୍ରଦାୟ, ମହିଳା, ପୂର୍ବତନ ସାମରିକ କର୍ମଚାରୀ, ଖେଳାଳୀମାନଙ୍କ ପାଇଁ ସରକାର ସ୍ଥାନ ସଂରକ୍ଷଣ କରିସାରିବା ପରେ ସେମାନେ ଆଉ ଥୟଧରି ରହିପାରିଲେ ନାହିଁ । ପରସ୍ପର ଡ଼କାଡ଼କି ହୋଇ ବିଧିବଦ୍ଧ ଆଲୋଚନା କଲେ । ଶେଷରେ ରାଜ୍ୟ ଓ କେନ୍ଦ୍ର ସରକାରଙ୍କୁ ସ୍ମାରକ ପତ୍ର ଦେବା କଥା ସ୍ଥିର ହେଲା । ଉପରୋକ୍ତ ବ୍ୟବସ୍ଥା ଅନୁସାରେ ସ୍ଥାନ ସଂରକ୍ଷିତ ରହିବା ପରେ ଅବଶିଷ୍ଟ ଯାହା ବଳୁଛି ସେଥିରୁ ଅଧେ ସେମାନଙ୍କ ପାଇଁ ସୁରକ୍ଷିତ ରଖିବାକୁ ଅନୁରୋଧ କରି ବିଫଳ ହେଲେ ବ୍ୟାପକ ଆନ୍ଦୋଳନ କରିବାକୁ ସର୍ବସମ୍ମତ ନିଷ୍ପତ୍ତି ନିଆଗଲା ।

ଏଇ ନୂତନ ସ୍ଥାନ ସଂରକ୍ଷଣ ଆନ୍ଦୋଳନର ନେତାମାନଙ୍କର ପରିଚୟ ଜାଣିବା ପାଇଁ ଆପଣମାନେ ଉତ୍କଣ୍ଠିତ ହୋଇ ପଡ଼ିବେଣି । ତେବେ ଆସନ୍ତୁ, ସେମାନଙ୍କ ସହିତ ପରିଚିତ ହୁଅନ୍ତୁ । ସେମାନଙ୍କ ଦାବୀ ସମ୍ପର୍କରେ ବିଚାରବିମର୍ଶ କରନ୍ତୁ । ସରକାର ସେମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରିବା ଉଚିତ କି ନୁହେଁ ପରାମର୍ଶ ଦିଅନ୍ତୁ । ସେମାନେ ମଧ୍ୟ ଆପଣଙ୍କ ଭଳି ସ୍ୱାଧୀନ ଭାରତର ନାଗରିକ । ସେମାନେ ରହନ୍ତି ଗଳିକନ୍ଦିରେ, ଫୁଟ୍‌ପାଥ୍‌ରେ, ପ୍ଲାଟଫର୍ମରେ, ଗଛମୂଳେ, ଗୁମୁଟି ତଳେ, ଝୋପଡ଼ି ପଡ଼ାରେ । ସେମାନଙ୍କର ନିର୍ଦ୍ଦିଷ୍ଟ ବାସସ୍ଥାନ ଠିକଣା ନଥାଏ । ବାରବୁଲା ଜୀବନ । ସେମାନେ ବି ଭୋଟ ଦିଅନ୍ତି । ସରକାର ଗଠନରେ ସାହାଯ୍ୟ କରନ୍ତି । ନେତା ମନ୍ତ୍ରୀ ମାନେ ସେମାନଙ୍କ ପାଇଁ ଅହରହ କାନ୍ଦନ୍ତି ମାତ୍ର କାହାରି ଆଖିରୁ ବୁନ୍ଦାଏ ଅଶ୍ରୁ ବହେ ନାହିଁ । ସେମାନେ ହେଉଛନ୍ତି ଭିକାରୀ, ବିକଳାଙ୍ଗ, ହିଞ୍ଜ଼ଡ଼ା, ଜାରଜ, ବେଶ୍ୟା, କୁଲି, କୁଷ୍ଠରୋଗୀ । ସେମାନେ

ଖୁବ୍ ଦୁଃଖ କଷ୍ଟରେ ଅବହେଳିତ ଅବସ୍ଥାରେ ଅତ୍ୟାଗ୍ରରିତ ହୋଇ ଜୀବନ-ଯାପନ କରନ୍ତି । ସେମାନଙ୍କର ଉପଯୁକ୍ତ ଥଇଥାନ୍ ପାଇଁ ସଫଳ ପଦକ୍ଷେପ ଏଯାଏଁ କୌଣସି ସରକାର ନେଇ ନାହାଁନ୍ତି ଯୋଉଥି ପାଇଁ ସେମାନେ ଆଜି ଏକଜୁଟ୍ ହେବାକୁ ବାଧ୍ୟ ହୋଇଛନ୍ତି ।

ସରକାରଙ୍କ ଘୋଷଣା ପ୍ରକାଶ ପାଇବା ପରେ ଭିକାରୀମାନଙ୍କର ନେତା ମହାଜନ ଦାସ, ବିକଳାଙ୍ଗ ମାନଙ୍କର ପ୍ରତିନିଧି ସର୍ବାଙ୍ଗ ସୁନ୍ଦର ସୁଦର୍ଶନ ମହାନ୍ତି, ହିଞ୍ଜଡ଼ା ଗୌରବ ଷଣ୍ଢ ପଟ୍ଟନାୟକ, ଜାରଜମାନଙ୍କ ନେତା ବିଧାନ ସାମନ୍ତ, ଗଣିକା ଶିରୋମଣି ସତ୍ୟବତୀ ପାଇକରାୟ, କୁଲି ସର୍ଦ୍ଦାର ଲେଙ୍ଗୁଡ଼ୁ ଖାଡ଼ଙ୍ଗା, କୃଷ୍ଣ ଫଘର ସଭାପତି ଶାମା ରାଓ ଏକତ୍ର ବସି ପ୍ରାଥମିକ ଆଲୋଚନା କଲେ । ଆଗାମୀ ପାର୍ଲ୍ୟାମେଣ୍ଟ ଅଧିବେଶନ ସମୟରେ ଦିଲ୍ଲୀରେ ଏକ ବିରାଟ ସମାବେଶର ଆୟୋଜନ କରି ସରକାରଙ୍କୁ ସ୍ମାରକ ପତ୍ର ଦିଆଯିବାକୁ ସ୍ଥିରୀକୃତ ହେଲା । ତା ପୂର୍ବରୁ ପ୍ରତି ରାଜ୍ୟରେ ସଂଗଠନକୁ ମଜବୁତ୍ କରିବା ପାଇଁ ଶାଖାମାନ ଖୋଲି ନିର୍ଦ୍ଦେଶ ଦିଆଗଲା । ସେମାନଙ୍କ ମଧ୍ୟରେ ଯେଉଁ ଆଲୋଚନା ହେଲା ତାର ସାରମର୍ମ ଏଇପରି—

ଭିକାରୀ ମାନଙ୍କର ଜାତିଗୋତ୍ର ନାହିଁ । ପେଟ ପାଇଁ ସେମାନେ ହାତ ପାତନ୍ତି । ଫୁଟ୍‌ପାଥ୍‌ରେ, ଗଛମୂଳେ, ପ୍ଲାଟଫର୍ମ, ବସଷ୍ଟାଣ୍ଡ, ହାଟ ଗଳିଆରେ ରହନ୍ତି । ମୁଣ୍ଡ ଗୁଞ୍ଜିବାକୁ ଥାନ ନାହିଁ । ସେମାନଙ୍କୁ ଭିକ୍ଷା ଦେବା ପାଇଁ ବାବୁ-ଭୟା ମାନେ ଘୃଣା ପ୍ରକାଶ କରନ୍ତି । ସେମାନଙ୍କ ଥଇଥାନ, ପ୍ରତିପୋଷଣ ପାଇଁ ବ୍ୟବସ୍ଥା କରାଯାଉ ନଚେତ ନିର୍ଦ୍ଦିଷ୍ଟ ପରିମାଣର ଭିକ୍ଷା ଦେବା ପାଇଁ ଆଇନ୍ କରାଯାଉ ।

ବିକଳାଙ୍ଗମାନଙ୍କ ପାଇଁ ସରକାର ଏକ ଭାଗ ସ୍ଥାନ ସଂରକ୍ଷଣ କରିଛନ୍ତି । ମାତ୍ର ଅନ୍ୟମାନେ ମିଥ୍ୟା ପ୍ରମାଣପତ୍ର ଦେଖାଇ, ଧରାଧରି କରି ତାହା ମାରି ନେଉଛନ୍ତି । ପ୍ରକୃତ ଉପକାର ସେମାନେ ପାଇ ପାରୁ ନାହାଁନ୍ତି । ସେମାନଙ୍କ ପାଇଁ ଅଧିକ ସ୍ଥାନ ସଂରକ୍ଷଣ କରାଗଲେ ଏ ପ୍ରକାର ଅସୁବିଧା ହୁଅନ୍ତା ନାହିଁ । ହିଞ୍ଜଡ଼ା ମାନେ ବି ସାମାଜିକ ଜୀବ । କିନ୍ତୁ ସମାଜରେ ସେମାନେ ଚିର ଅବହେଳିତ, ଉପହସିତ । ସେମାନେ ବିଭିନ୍ନ ଉପାୟରେ ଲୋକଙ୍କ ମନୋରଞ୍ଜନ କରନ୍ତି । ତଥାପି ସେମାନଙ୍କୁ ଅନ୍ୟମାନେ ତାଚ୍ଛଲ୍ୟ କରନ୍ତି । ସେମାନଙ୍କ ପାଇଁ ସ୍ୱତନ୍ତ୍ର ରାଜ୍ୟ ଗଠନ କରି ଥଇଥାନ କରାଯାଉ । ବିଧାନ ସଭା ଓ ପାର୍ଲ୍ୟାମେଣ୍ଟରେ ସେମାନଙ୍କୁ ପ୍ରତିନିଧିତ୍ୱ ମିଳୁ ।

ଜାରଜମାନଙ୍କର ଯୁକ୍ତି ହେଉଛି, ସେମାନଙ୍କୁ ଜାରଜ କଲା କିଏ ? ପିତା ମାତାଙ୍କ ଔରଷରୁ କ'ଣ ସେମାନେ ଜନ୍ମ ହୋଇ ନାହାଁନ୍ତି ? ଧନୀ, ବିଳାସୀମାନେ ସରଳତାର ସୁଯୋଗ ନେଇ ଅସହାୟା ନାରୀଙ୍କ ଜୀବନକୁ ଛିନ୍ନଭିନ୍ନ କରନ୍ତି । ସେମାନଙ୍କ ଖିଆଲର ଶିକାର ହୋଇ ଜନ୍ମ ନେଉଥିବା ଶିଶୁଙ୍କୁ ଜାରଜ କୁହାଯିବ କାହିଁକି ? ସେମାନଙ୍କ ମାଆମାନଙ୍କ ନାମାନୁସାରେ ସ୍କୁଲରେ ନାମ ଲେଖାଇବାର ସୁଯୋଗ ଦିଆଯାଉ । ବିଭିନ୍ନ ଚାକିରିରେ ମନୋନୟନ କରାଯାଉ ।

ଗଣିକା ହେଲେବି ସେମାନେ ନାରୀ, ମାତୃଜାତି । ସେମାନଙ୍କୁ ଘୃଣ୍ୟ ଦୃଷ୍ଟିରେ ଦେଖାଯିବ କାହିଁକି ? ସେମାନେତ ଇଚ୍ଛାକୃତ ଭାବରେ ବେଶ୍ୟାବୃତ୍ତି ଗ୍ରହଣ କରି ନାହାନ୍ତି । ସମାଜର ବଡ଼ପଣ୍ଡା, ନେତା, ମନ୍ତ୍ରୀ, ଧନୀ, ପୁଞ୍ଜିପତି ସମସ୍ତେ ତାଙ୍କ ଜୀବନକୁ ନେଇ ଖେଳନ୍ତି । ଅଥଚ ସେଇମାନେ ତାଙ୍କୁ ଘୃଣା ଚକ୍ଷୁରେ ଦେଖନ୍ତି । ସେମାନଙ୍କୁ ସାମାଜିକ ଅଧିକାର ପ୍ରଦାନ କରାଯାଉ । ବେଶ୍ୟାବୃତ୍ତିକୁ ଆଇନସମ୍ମତ କରାଯାଉ ନଚେତ୍ ସେମାନଙ୍କର ଉପଯୁକ୍ତ ଥଇଥାନ କରାଯାଉ । ସେମାନଙ୍କର ସନ୍ତାନ ସନ୍ତତିଙ୍କୁ ଶିକ୍ଷା, ବ୍ୟବସାୟ, ଚାକିରି କ୍ଷେତ୍ରରେ ସୁଯୋଗ ଦିଆଯାଉ ।

କୁଲି, ଶ୍ରମିକମାନେ କଠିନ ପରିଶ୍ରମ କରନ୍ତି । ପିଠିରେ ବୋଝ ବହି ପେଟରେ ଓଦାକନା ଦେଇ ସଢ଼ନ୍ତି । ବାବୁଭାୟାମାନେ ସେମାନଙ୍କୁ କଠିନ ପରିଶ୍ରମ କରାଇ ଉପଯୁକ୍ତ ମଜୁରି ଦିଅନ୍ତି ନାହିଁ । ସେମାନେ ନଥିଲେ ଦେଶର ପ୍ରଗତି ନିଶ୍ଚିତ ଭାବରେ ବ୍ୟାହତ ହୁଅନ୍ତା । ସେମାନଙ୍କର ଥଇଥାନ୍ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉ । ବାଳଶ୍ରମିକ ପ୍ରଥା ଉଚ୍ଛେଦ କରାଯାଉ । ସେମାନଙ୍କୁ ଶିକ୍ଷା ଦେଇ କର୍ମସଂସ୍ଥାନ କରାଯାଉ । ସେମାନଙ୍କୁ ମଧ୍ୟ ବିଭିନ୍ନ କ୍ଷେତ୍ରରେ ପ୍ରତିନିଧିତ୍ୱ ମିଳୁ ।

କୁଷ୍ଠରୋଗ ବଂଶାନୁକ୍ରମିକ ନୁହେଁ । ଔଷଧ ସେବନ କଲେ ଏହା ସଂପୂର୍ଣ୍ଣ ଆରୋଗ୍ୟ ହୋଇ ପାରିବ ଏବଂ କୁଷ୍ଠରୋଗୀମାନଙ୍କୁ କେହି ଘୃଣା କରିବା ଉଚିତ ନୁହେଁ ବୋଲି ସରକାର ଘୋଷଣା କରନ୍ତି । ନେତାଏ ବିବୃତ୍ତି ଦିଅନ୍ତି । କିନ୍ତୁ ବାସ୍ତବତା ସଂପୂର୍ଣ୍ଣ ଭିନ୍ନ । ସମସ୍ତେ ତାଙ୍କୁ ଘୃଣା କରନ୍ତି । ରୋଗମୁକ୍ତ ହେଲେ ମଧ୍ୟ ସମାଜ ସେମାନଙ୍କୁ ସୁସ୍ଥ ଭାବରେ ଗ୍ରହଣ କରେ ନାହିଁ । ଏଣୁ ସେମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବା ଦରକାର । ସେମାନଙ୍କୁ ଥଇଥାନ କରି କର୍ମ ସଂସ୍ଥାନ ଯୋଗାଇ ଦେବା ଆବଶ୍ୟକ ।

ଆପଣମାନେତ ସବୁକଥା ଜାଣିଲେ । ଏବେ କୁହନ୍ତୁ, ସେମାନଙ୍କ ଦାବୀ ଯୁକ୍ତିଯୁକ୍ତ କି ନୁହେଁ ? ସରକାର ସେମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ କରିବା ଉଚିତ କି ନୁହେଁ ? ଏଇ ପରିପ୍ରେକ୍ଷୀରେ ସମଗ୍ର ଭରତବର୍ଷରୁ ସମସ୍ତ ପ୍ରକାର ସଂରକ୍ଷଣ ବ୍ୟବସ୍ଥା ଉଠାଇ ଦିଆଯିବା ଉଚିତ ନା ଶତକଡ଼ା ଶହେଭଗ ସ୍ଥାନ ସଂରକ୍ଷିତ କରି ନିର୍ଦ୍ଦିଷ୍ଟ କେତେକ ଜାତି, ସଂଖ୍ୟାଲଘୁ ସଂପ୍ରଦାୟଙ୍କୁ ତୋଷଣ ପୂର୍ବକ ଅନ୍ୟମାନଙ୍କୁ ବଞ୍ଚିତ କରାଯିବା ଉଚିତ ? ସଂରକ୍ଷଣ ଦ୍ୱାରା ଯୋଗ୍ୟତା, ଦକ୍ଷତାକୁ ଗୌଣ କରିଦିଆ ଯାଉନାହିଁକି ?



# ଦଶାନନ ବାବୁ ଓ ବିଶ୍ୱଭୂଷଣ ଉପାଧି

ମଧ୍ୟପ୍ରଦେଶ ହାଇକୋର୍ଟର ମାନ୍ୟବର ଇନ୍ଦୋର ବେଞ୍ଚ ବିଭିନ୍ନ ଉପାଧି ପ୍ରଦାନ କ୍ଷେତ୍ରରେ ଜାରି କରିଥିବା ରହିତାଦେଶ ସମ୍ବାଦ ପାଠକରି ଦଶାନନ ବାବୁଙ୍କ ମନଟା ବିଷେଇ ଉଠିଛି । ମୋକଦ୍ଦମାର ରାୟ ପ୍ରକାଶ ନପାଇବା ପର୍ଯ୍ୟନ୍ତ ଭାରତ ସରକାର କୌଣସି ପ୍ରକାର ଲୋଭନୀୟ ଉପାଧି, ଯଥା ; ପଦ୍ମ ଭୂଷଣ, ପଦ୍ମଶ୍ରୀ, ପରମବୀର ଚକ୍ର ଆଦି କାହାକୁ ପ୍ରଦାନ କରି ପାରିବେ ନାହିଁ । କେହି ଜଣେ ସରକାରଙ୍କୁ ଚ୍ୟାଲେଞ୍ଜ କରିଛନ୍ତି ଯେ, ଏସବୁ ଉପାଧି ପ୍ରଦାନ କ୍ଷେତ୍ରରେ ପାତର ଅନ୍ତର ନୀତି ଅବଲମ୍ବନ କରାଯାଉଛି । ରାଜନୈତିକ ଅଭିସନ୍ଧି ରଖି ନିଷ୍ଠା, ଆଦର୍ଶ, ଯୋଗ୍ୟତାକୁ ପଛକୁ ପକାଇ ଯାହାଙ୍କୁ ଇଛା ତାଙ୍କୁ ଉପାଧି ପ୍ରଦାନ କରାଯାଉନ୍ତି । ଇଂରେଜମାନେ ଏ ଦେଶକୁ ଶାସନ କରୁଥିବା ସମୟରେ ଯେଉଁମାନେ ତାଙ୍କର ଗୁଣଗାନ କରୁଥିଲେ, ପଦଲେହନ କରୁଥିଲେ, ସେମାନଙ୍କୁ ନାନା ଉପାଧି ଦେଇ, ପୁରସ୍କାର ଦେଇ ଫାଇଦା ହାସଲ କରୁଥିଲେ । ଦେଶ ସ୍ୱାଧୀନ ହେବା ପରେ ସରକାର ଦେଶସେବା, କଳା-ସଂସ୍କୃତି, ସାହିତ୍ୟ, ବିଜ୍ଞାନ, କ୍ରୀଡ଼ା, କୃଷି, ଦେଶରକ୍ଷା କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ବ୍ୟକ୍ତିଙ୍କୁ ବିଭିନ୍ନ ଉପାଧି ପ୍ରଦାନ କରି ଆସୁଛନ୍ତି । ଏଥିରେ ମଧ୍ୟ ନୀତି ନିୟମ କୁଆଡ଼େ ଗଲଣି । ସବୁଠି ରହିଛି ସ୍ୱାର୍ଥ, ଦଳୀୟ ଫାଇଦା, ରାଜନୈତିକ ଅଭିସନ୍ଧି ।

ହାଇକୋର୍ଟରେ ରିଟ୍ ଦାଖଲ କରିଥିବା ବ୍ୟକ୍ତିଙ୍କ ପ୍ରତି ଦଶାନନଙ୍କ କ୍ରୋଧ ଉଦ୍‌ବେଳିତ ହୋଇ ପଡ଼ିଲା । ଆଉ କିଛିଦିନ ପରେ ସେ ଏ ପ୍ରକାର ଅଭିଯୋଗ ଆଣିଥିଲେ କାହାର କ'ଣ କ୍ଷତି ହୋଇ ଯାଇଥାନ୍ତା ? ତାଙ୍କରି ବେଳକୁ ସବୁ ଅଡ଼ୁଆ ? କାହାକୁ କହିବେ ସେ ? ନିଜର ସବୁ ଯୋଜନା ପଣ୍ଡ ହୋଇଯିବା ଦେଖି ତାଙ୍କୁ କିଛି ଭଲ ଲାଗିଲାନି । ଭାଗ୍ୟ ମନ୍ଦ ନୁହେଁ ତ ଆଉ କ'ଣ ? ଆସନ୍ତା ଅକ୍ଟୋବର ମାସରେ ଆନ୍ତର୍ଜାତିକ ସ୍ତରରେ ସେ "ବିଶ୍ୱ ଭୂଷଣ" ଉପାଧିରେ ବିଭୂଷିତ ହୋଇଥାନ୍ତେ । ବିଶ୍ୱରେ ନୋବେଲ ପୁରସ୍କାର

ଠାରୁ ଅଧିକ ମୂଲ୍ୟବାନ ଏବଂ ଗୌରବଶାଳୀ ଏଇ ସମ୍ମାନ ପାଇବାରେ ସେ ହୋଇଥାନ୍ତେ ପ୍ରଥମ ଭାରତୀୟ ବ୍ୟକ୍ତି ।

ସବୁ ଦିଗରୁ ଘମାଘୋଟ ଅନୁସନ୍ଧାନ, ଅନୁଶୀଳନ, ପରୀକ୍ଷା, ନିରୀକ୍ଷା, ବିଶ୍ଳେଷଣ, ସଂଶ୍ଳେଷଣ କରଯାଇ ତାଙ୍କୁ ଏଇ ଉପାଧି ପାଇଁ ମନୋନୀତ କରାଯାଇଥିଲା । ଭାରତ ସରକାରଙ୍କ ସୁପାରିଶ ପତ୍ର ପାଇବା ପରେ ବହୁ ରାଷ୍ଟ୍ରୀୟ ଏକ ସଂସ୍ଥା ପକ୍ଷରୁ ତାଙ୍କ ଜୀବନୀ ଛପା ଯାଇଥାନ୍ତା । ପୃଥିବୀର ସବୁ ନାମୀ ଦାମୀ ସମ୍ବାଦପତ୍ର, ପତ୍ରିକାମାନଙ୍କରେ ତାଙ୍କ ଫଟୋ, କୃତିତ୍ୱ ପ୍ରକାଶ ପାଇ ଥାନ୍ତା । ଟି. ଭି. ରେଡ଼ିଓରେ ପ୍ରସାରିତ ହୋଇଥାନ୍ତା । ମାତ୍ର ସବୁ ଗୋଳମାଳ ହୋଇଗଲା । ଏଭଳି ପରିସ୍ଥିତିରେ ଭାରତ ସରକାର ନିଜେ ତ କାହାକୁ ଉପାଧି ଦେଇ ପାରିବେନି, ତାଙ୍କ ପାଇଁ ମଧ୍ୟ ସୁପାରିଶ ପଠାଇ ପାରିବେନି । ଯା'ଠାରୁ ବଳି ଦୁଃଖ ଆଉ କ'ଣ ଥାଇପାରେ ?

ପ୍ରିୟତମା ପତ୍ନୀ ରଣଚଣ୍ଡୀ ଦେବୀ କେତେ ବୁଝାଇଲେଣି । ଚେଲା, ଚାମର, ବନ୍ଧୁମାନେ କେତେ ପ୍ରବୋଧନା ଦେଲେଣି । ହେଲେ ମନ ମାନୁଛି କୋଉଠି ? ବିଶ୍ୱଭୂଷଣ ଉପାଧି ପାଇବା ପାଇଁ ସେ ଯେ କେତେ ପରିଶ୍ରମ କରି, କେତେ ଲବି, ଖୋସାମତ, ତେଲ ମାଲିସ ମାଧ୍ୟମରେ ଅଜସ୍ର ପ୍ରମାଣପତ୍ର, ପ୍ରଶସ୍ତି, ମାନପତ୍ର ଆଦି ହାସଲ କରିଥିଲେ ସବୁ ତେବେ କ'ଣ ପାଣିଚିଆ ହୋଇଯିବ ? ତାଙ୍କ ପରିଶ୍ରମର ଫଳ ତାଙ୍କୁ ମିଳିବନି ? ଭାବି ଭାବି ତାଙ୍କୁ ଆଉ ନିଦ ହେଲାନି । ଖାଇବାକୁ ମଧ୍ୟ ଭୁଲିଗଲେ । ଆନ୍ତର୍ଜାତିକ ଉତ୍ସବର ଦୃଶ୍ୟ ତାଙ୍କ ଆଖିରେ ନାଚି ଉଠିଲା । ଜାତିସଂଘର ସାଧାରଣ ସଂପାଦକଙ୍କ ହାତରୁ ସେ ଉପାୟନ, ମାନପତ୍ର ଆଦି ଗ୍ରହଣ କରିଥାନ୍ତେ । ବହୁ ଦେଶ ତାଙ୍କୁ ନିମନ୍ତ୍ରଣ କରିଥାନ୍ତେ । ଏଇ ପରିପ୍ରେକ୍ଷୀରେ ଏକ ପ୍ରକାର ବିଶ୍ୱ ପରିକ୍ରମା ସାରି ଦେଇଥାନ୍ତେ ସେ । ସବୁ ଆଶା ତାଙ୍କର ମଉଳି ଯିବାକୁ ଲାଗିଲା । "ଲୁଣ ଖାଏ ହାଣ୍ଡି ଚିନ୍ତା ଖାଏ ଗଣ୍ଡି" ଭଳି ଦଶାନନ ବାବୁ ଦିନ କେଇଟାରେ ଅଧା ଶୁଖିଗଲେ । ତାଙ୍କ ଓଜନ ଦଶପାଉଣ୍ଡ କମିଗଲା । ଯିଏ ଦେଖିଲା ପଚାରିଲା, "କ'ଣ ଆଜ୍ଞା ? ଦେହ ଖରାପ ହୋଇଛି କି ? ଭଲ ଡାକ୍ତର ଦେଖାଇ ଔଷଧ ଖାଆନ୍ତୁ । ସ୍ୱାସ୍ଥ୍ୟର ଯତ୍ନ ନିଅନ୍ତୁ । ହେଲେ ମନର ଦୁଃଖ, ହୃଦୟର ଅବଶୋଷ କଥା କିଏ ବୁଝୁଛି ?

ସ୍ୱାମୀଙ୍କର ବିଷର୍ଣ୍ଣ ଭାରାକ୍ରାନ୍ତ ବଦନକୁ ଚାହିଁ ସ୍ତ୍ରୀ ରଣଚଣ୍ଡୀ ଦେବୀ ଏକାବେଳକେ ଲୁହର ଝରଣା ବୁହାଇ ଦେଲେ । କିଛି ସମୟ ନନ୍‌ଷ୍ଟପ୍ କାନ୍ଦଣା ପରେ ଲୁହ ପୋଛି ନାକ ସୁଡ଼ୁକା ମାରି ସ୍ୱାମୀଙ୍କୁ ଶାନ୍ତ୍ୱନା ଦେଲେ ।

"ଦୁଃଶ୍ଚିନ୍ତା କରି ଲାଭ କ'ଣ ? ଆଜି ନ ମିଳିଲେ କାଲି ମିଳିବ । ତମଠୁ ଆଉ କିଏ ଯୋଗ୍ୟତମ ବ୍ୟକ୍ତି ଅଛି ଯେ ଏଇ ଉପାଧି ପାଇବ ? ତମେତ ଏକାଧାରରେ କବି, ଲେଖକ, ଚିତ୍ରକର, ନେତା, ଅଭିନେତା, ନାଟ୍ୟକାର, ସମାଜସେବୀ, ଦେଶପ୍ରେମୀ, ପ୍ରେମିକ, ପ୍ରତାରକ, ସାଧୁ , ଭଣ୍ଡ, ଲମ୍ପଟ, କାମୁକ, ଭବୁକ, ଚତୁର, ବୁଦ୍ଧିମାନ ବ୍ୟକ୍ତି ଭବରେ ପରିଚିତ । ରାଜ୍ୟଠାରୁ କେନ୍ଦ୍ରଯାଏ କେତେ ନେତା ମନ୍ତ୍ରୀ ତମ ହାତରେ । କାହା ପାଇଁ ତମେ କ'ଣ ନକରିଛ ? ନିର୍ବାଚନ ବେଳେ ପରା ତମେ ଏକା ଶହ ଶହ ବ୍ୟାଲଟ୍ ପେପରରେ ମୋହର ମାରି ବାକ୍ସରେ ପକାଇଛ ? ହତ୍ୟା, ଧର୍ଷଣ, ଚୋରି, ମିଥ୍ୟା ସାକ୍ଷୀ, ଅନଶନ, ଦୁର୍ନୀତି, ଭ୍ରଷ୍ଟାଚାର, ବେଇମାନୀରେ ଆଉ କିଏ ଅଛି ତମକୁ ବଳେଇଯିବ ? ଯେମିତି ହେଉ ତମକୁ ଏଇ ଉପାଧି ନିଶ୍ଚୟ ମିଳିବ । ଏବର୍ଷ ନ ହେଲା ନାଇଁ ଆସନ୍ତା ବର୍ଷକୁ ତ ମିଳିବ । ଏତେ ଅତର୍ଚ୍ଛା ହୋଇ ଲାଭ କ'ଣ ? ତା ବୋଲି ତମେ ଭଲରେ ଗଣ୍ଡେ ଖାଇବନି ? ଶାନ୍ତିରେ ଟିକିଏ ବିଶ୍ରାମ କରିବନି ? ମୋ କଥା ମାନ । ବରଂ ଗୋଟିଏ କାମ କର । ଆଗ ଭାରତରତ୍ନ ପାଇବା ପାଇଁ ଚେଷ୍ଟା କର । ତା'ବି ଯଦି ନ ହେଉଛି ଉତ୍କଳ ରତ୍ନ ହେଉ ବା କଟକ ରତ୍ନ ପାଇଁ ଚେଷ୍ଟା କରି ଦେଖ । ତାପରେ 'ବିଶ୍ୱଭୂଷଣ' ଯିବ କୁଆଡ଼େ ?"

ରଣଚଣ୍ଡୀଙ୍କୁ କୋଳେଇ ନେଇ ତୃପ୍ତିର ହସ ଟେନାଏ ବିଛୁଡ଼ି ଦେଲେ ଦଶାନନବାବୁ । ଗେଲରେ ଚିବୁକ ସ୍ପର୍ଶ କରି କହିଲେ "ଆହାଲୋ ମୋ ଜୀବନ ଧନୀ" । ରଣଚଣ୍ଡୀ ଦେବୀ ଲଙ୍କାରେ ହରିନାମ ଶୁଣି ଲାଜରେ ଝାଉଁଳି ପଡ଼ିଲେ ।



# ପଦଯାତ୍ରା ମହିମା

ଜଟାଧାରୀବାବୁ ରାଜ୍ୟର ନୂଆ ଅବକାରୀ ମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିସାରିବା ପରେ ଭାବିଥିଲେ, ତାଙ୍କୁ ସମସ୍ତେ ସ୍ୱାଗତ କରିବେ । ଆଉ କେହି କିଛି କରନ୍ତୁ, ନ କରନ୍ତୁ, ଅନ୍ତତଃ ତାଙ୍କର ଦଳୀୟ କର୍ମୀମାନେ ତ ଦାମିକା ଫୁଲମାଳଟେ ତାଙ୍କ ବେକରେ ଲମ୍ବାଇ ଦେଇ ଜିନ୍ଦାବାଦ୍ ଧ୍ୱନିରେ ଆକାଶ କମ୍ପାଇ ଦେଇଥାନ୍ତେ ? କିନ୍ତୁ......; ସବୁକିଛି ଏପଟ ସେପଟ ହୋଇଗଲା । ଘରେ ନପଶୁଣୁ ମୁଣ୍ଡରେ ଚାଳ ବାଜିଲା । କପାଳ ଫାଟିଲା । ଦଳ ମଧ୍ୟରେ ଥାଇ ଅସନ୍ତୁଷ୍ଟ ଗୋଷ୍ଠୀର ନେତୃତ୍ୱ ନେଉଥିବା ଜଟାଧାରୀ ବାବୁ ମନ୍ତ୍ରୀତ୍ୱ ଥୋପ ଗିଳିବାରୁ ସମସ୍ତେ ଖପ୍‌ପା । ତାଙ୍କର ଇସ୍ତଫା ପାଇଁ ଅଡ଼ି ବସିଛନ୍ତି । କ'ଣ ଆଉ ଅସୁବିଧା ହୋଇଗଲା ଯେ ? ମନ୍ତ୍ରୀ ହେବାକୁ କିଏ ନ ଚାହେଁ ? କ୍ଷମତାର ଡୋରୀ ହାତରେ ଧରି ଅନ୍ୟମାନଙ୍କୁ ନଚାଇବାକୁ କିଏ ନ ଚାହେଁ ? ତିନି ତିନି ଥର ମନ୍ତ୍ରୀମଣ୍ଡଳ ସମ୍ପ୍ରସାରିତ ହେଲା । ଅଥଚ ହାତୀ ତାଙ୍କ ମୁଣ୍ଡରେ ସୁନା କଳସୀରୁ ପାଣି ଢାଳି ନଥିଲା । ଏବେ ଯଦି ଖୋଦ ମୁଖ୍ୟମନ୍ତ୍ରୀ ତାଙ୍କର ଗୁରୁତ୍ୱ ଉପଲବ୍‌ଧି କରି ଯାଚି ଯାଚି ମନ୍ତ୍ରୀ ପଦଟେ ଦେଲେ କ୍ଷତି କ'ଣ ? ହଁ, ସେ ନୂଆ ମଦ ଦୋକାନ ଖୋଲିବାକୁ ସ୍ୱତନ୍ତ୍ର ଲାଇସେନ୍‌ସ ଦେଇଛନ୍ତି । ମଦ ଦୋକାନ ଉଦ୍‌ଘାଟନ କରିଛନ୍ତି । ଏଥିରେ ତାଙ୍କର ବା ଭୁଲ କୋଉଠି ? ଏସବୁ ତ ସରକାରଙ୍କ ଯୋଜନା । ମଦ ଦୋକାନ ସବୁ ଉଠିଗଲେ ରାଜ୍ୟ ଚଳିବତ ? ତା ଛଡ଼ା ମହୁଲି ମଦ ପୁଣି ସ୍ୱାସ୍ଥ୍ୟ ପକ୍ଷରେ ହିତକର । କେହି କିଛି ବୁଝିବାକୁ ରାଜି ନୁହଁନ୍ତି ।

ଏଇ କେତେଦିନ ହେଲା ବାବୁଙ୍କର ମନ ଆଦୌ ଭଲନାହିଁ । ସର୍ବଦା ସେଇ ଗୋଟିଏ ଚିନ୍ତା ତାଙ୍କୁ ଘାରିଛି । କିପରି ସେ ଜନପ୍ରିୟତା ହାସଲ କରିବେ । ଫୁଲମାଳରେ ପୋତି ହୋଇ ପଡ଼ିବେ । ତାଙ୍କର ଜିନ୍ଦାବାଦ ଧ୍ୱନିରେ ରାଜ୍ୟ କମ୍ପିବ । ଲୋକେ ତାଙ୍କ ଫଟୋ ନେଇ ଘରେ ଘରେ ଟାଙ୍ଗିବେ । ପ୍ରକୃତରେ ଦେଖିବାକୁ ଗଲେ ନିର୍ବାଚନରେ ଜିଣିବା ପରଠାରୁ

ତାଙ୍କର ଦଶା ଖରାପ ପଡ଼ିଛି । ଶନି କିମ୍ବା ରାହୁ ତାଙ୍କ ପଛରେ ହରଦମ୍ ଲାଗିଛନ୍ତି । ନା ଘରେ ଶାନ୍ତି ନା ବାହାରେ ଶାନ୍ତି । ଗ୍ରହ ଶାନ୍ତି କିପରି ହୋଇ-ପାରିବ ସେ ମଧ୍ୟ ଏକ ଚିନ୍ତା । କ'ଣ କରିବେ କିଛି ଠିକ୍ କରି ପାରୁନଥାନ୍ତି । ଏଣେ ନିଜର ସ୍ତ୍ରୀ, କନ୍ୟା, ଶଳା-ଶାଳୀଙ୍କ ପକ୍ଷରୁ ହଜାରେ ଗପ । ମନ୍ତ୍ରୀ ତ ହେଲ, ଅମୁକ କର, ସମୁକ କର । ଏଇଟା କିଣ, ସେଇଟା କିଣ ।

ଜଟାଧାରୀ ବାବୁ ଗୁରୁଙ୍କୁ ଚିତାକାଟି ରାଜନୀତିରେ ବାଜିମାତ୍ କରିଛନ୍ତି । ସେଇଥିପାଇଁ ଦଳେ ଈର୍ଷ୍ୟାରେ ଜଳୁଛନ୍ତି । ରାଜନୀତିଟା କ'ଣ ଏମିତି ସେମିତି ଚିଜଟେ ହୋଇଛି ଯେ ଯିଏ ସିଏ ଅକ୍ତିଆର କରିନେଇ ପାରିବ ? ସେ କେତେ କଷ୍ଟରେ ପ୍ରେମାନନ୍ଦଙ୍କର ପ୍ରେମମୟ ମୂର୍ତ୍ତିରେ ପ୍ରତାରଣା, ପ୍ରବଞ୍ଚନା, ବେଇମାନୀ କଳଙ୍କର ଛିଟା ଲଗେଇ କଳେବଳେ ନୋଟ ବିଞ୍ଚି, ଭୋଟ କିଣିଛନ୍ତି ତାହା କେବଳ ସେ ଏବଂ ତାଙ୍କର କତିପୟ କୁଞ୍ଚ ଟେକାହିଁ ଜାଣିଛନ୍ତି । ଘଟଣାଟା ଏଇପରି...... । ଆଗରୁ ସେ ପୂର୍ବତନ ମନ୍ତ୍ରୀ ପ୍ରେମାନନ୍ଦ ବାବୁଙ୍କର ପାଖଲୋକ ବୋଲି ଗଣା ଯାଉଥିଲେ । ସବୁ କଥାରେ ପ୍ରେମାନନ୍ଦ ବାବୁ ତାଙ୍କୁ ନପଚାରି ପାଦେ ଆଗଉ ନଥିଲେ । ଏପରିକି ସହବାସକୁ ଯିବା ପୂର୍ବରୁ ଜଟାଧାରୀଙ୍କ ହାତ ତିଆରି ଗୋଟାଏ ପେଗ୍ ନହେଲେ ଚଳୁ ନଥିଲା । ଖାସ୍ ଜଟାଧାରୀଙ୍କ ପାଇଁତ ସେ ଦୁଇ ଦୁଇଥର ନିର୍ବାଚନରେ ଜିତି ମନ୍ତ୍ରୀ ହେଲେ । କୋଠା କଲେ, ଫ୍ୟାକ୍ଟ୍ରି କଲେ, ବ୍ୟାଙ୍କ୍ ବାଲାନ୍ସ ବଢ଼ାଇଲେ । ପାଞ୍ଚ ପୁରୁଷଙ୍କ ପାଇଁ ସଞ୍ଚୟ କରିଗଲେ । ହେଲେ ଜଟାଧାରୀଙ୍କ ପାଇଁ କିଛି କଲେ ନାହିଁ । ପ୍ରତିଥର ତାଙ୍କୁ ପ୍ରଲୋଭନ ଦେଖାଇ ନିଜର ଫାଇଦା ହାସଲ କରିନେଲେ । ଅପେକ୍ଷା କର, ଦେଖିବା, ତମ ପାଇଁ ଇହା କରିଦେବି ତାହା କରିଦେବି କହି କିଛି କଲେନି । କ୍ରମଶଃ ନିଜ ଲୋକଙ୍କ ପାଇଁ ଅନେକ କିଛି କରିଚାଲିଲେ ।

ଜଟାଧାରୀ ବାବୁ କେତେ ସହନ୍ତେ ଆଉ ? ବାଧ୍ୟ ହୋଇ ଶେଷରେ ଗୁରୁଙ୍କୁ ଚିତା କାଟିଲେ । ପ୍ରେମମୟ ପ୍ରେମାନନ୍ଦଙ୍କର ଅସଲ ରୂପ ପଦାରେ ପକାଇ ଦେଲେ । ତାଙ୍କର ବେଆଇନ ସମ୍ପତ୍ତି, ମଦ୍ୟପାନ, ନାରୀ ଧର୍ଷଣ, ସାଧାରଣ ଅର୍ଥ ଆତ୍ମସାତ୍ ତାଙ୍କ ପାଇଁ କାଳ ହେଲା । ଜଟାଧାରୀ ବାବୁ ଖୁବ୍ କାଇଦାରେ ଗୁରୁଙ୍କୁ ତଳେ ପକାଇ ତାଙ୍କ ପିଠିରେ ପାଦ ଦେଇ ହାଇକମାଣ୍ଡଙ୍କୁ ପଟେଇ ଟିକେଟ ଖଣ୍ଡେ ମାରି ଆଣିଲେ । ଅବଶ୍ୟ ଅନୁକୂଳ ହାଓ୍ୱା ଥିବାରୁ ଜମ୍ ପରିଶ୍ରମ, ଅଳ୍ପ ଟଙ୍କା ବାଣ୍ଟି ସେ ବାଜିମାତ୍ କରିଦେଲେ । ତାଙ୍କର ତେବେ ଭୁଲ ରହିଲା କୋଉଠି । ଭାରତରେ ଏମିତି କିଏ ନେତା ମନ୍ତ୍ରୀ ଅଛନ୍ତି

ଯିଏ ନିଜ ସୁବିଧା ଗ୍ରହିଁ ନାହାଁନ୍ତି ? ନିର୍ବାଚନରେ କଳ କୌଶଳ କରିନାହାନ୍ତି ? ଏମିତି ଅନେକ କଥା ଭବୁ ଭବୁ ଜଟାଧାରୀ ବାବୁଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ଡ୍ରଇଁରୁମ୍‌ରେ ବସି ବସି ଘଡି ଏଗାରଟା ହେଲଣି । ଡାଏନିଂ ଟେବୁଲରେ ଅପେକ୍ଷା କରି କରି ଅତିଷ୍ଠା ହୋଇ ପତ୍ନୀ ସୁଧାରାଣୀ ଆସିଲେ । ଗ୍ରକରମାନେ କେହି ଭରସି କରି ବାବୁଙ୍କ ସାମନା ସାମନି ହୋଇ ନାହାଁନ୍ତି ଏଯାଏ ।

କ'ଣ ହୋଇଛି ଆଜି ତମର ? ଏଯାଏ ଖାଇବାକୁ ଆସୁନ । ଅଥଚ ନଅଟା ବାଜିବା ଆଗରୁ ସମସ୍ତଙ୍କୁ ବ୍ୟସ୍ତ କରି ପକାଅ । ଘଟଣା କ'ଣ ? ଏଇ କେତେଦିନ ହେଲା ମୁଁ ଦେଖୁଛି ତମ ମନ ଆଦୌ ଭଲ ନାହିଁ । ଏଣୁ ମୁଁ କ'ଣ କହୁଥିଲି କି, ମାନେ, ଆମ ସହରକୁ ସ୍ୱାମୀଜୀ ଆସିଛନ୍ତି, ସିଦ୍ଧ ସାଧକ । ଯାହାକୁ ଯାହା କହନ୍ତି ଅକ୍ଷରେ ଅକ୍ଷରେ ଫଳେ । ଗ୍ଲୁନ, କାଲି ସକାଳେ ତାଙ୍କ ପାଖକୁ ଯାଇ ଦୁଃଖ ଜଣାଇବା । ସେ ନିଶ୍ଚୟ କିଛି ପ୍ରତିକାର ବ୍ୟବସ୍ଥା କରିବେ । ମୁଁ ମୋ ସାଙ୍ଗ ସୁନନ୍ଦାକୁ ଫୋନ୍ କରି ଦେଉଛି । ସେ ଆମ ସହିତ ଯିବ । ଆମକୁ ତାଙ୍କ ସହିତ ପରିଚୟ କରାଇ ଦେବ । କାରଣ ସ୍ୱାମୀଜୀ ଯେବେ ଆସିଲେ ବି ତାଙ୍କରି ଘରେ ପ୍ରଥମେ ପହଞ୍ଚନ୍ତି । ତାପରେ ଆଶ୍ରମରେ ରହି ଲୋକଙ୍କର ସୁବିଧା ଅସୁବିଧା ବୁଝନ୍ତି । ଲୋକଙ୍କର ସୁଅ ଛୁଟେ ତାଙ୍କ ପାଖକୁ । ଏବେ ଆସିଲ, ଖାଇବ । ଘରି ଭେକ କଲଣି । ଘଡି ଅନେକ ହେଲଣି ।

ସ୍ୱାମୀଜୀ, ମାନେ ଶ୍ରୀଳପାଦ ଶ୍ରୀ ଶ୍ରୀ ଅଭୟାନନ୍ଦଜୀ ମହାରାଜ । ସେ ସମସ୍ତଙ୍କୁ ଅଭୟ ପ୍ରଦାନ କରନ୍ତି । ଭାରତର ଅଧିକାଂଶ ବଡ଼ ବଡ଼ ନେତା ମନ୍ତ୍ରୀ ତାଙ୍କର ପରମ ଭକ୍ତ । ରାଜୀବଗାନ୍ଧୀଙ୍କ ଠାରୁ ଭି.ପି., ପି.ଭି., ଚନ୍ଦ୍ରଶେଖର, ଚରଣ ସିଂହ, ମୁଲାୟମ, ଲାଲୁଙ୍କ ପର୍ଯ୍ୟନ୍ତ ଅଧିକାଂଶ ନେତାଙ୍କୁ ସେ ଜନପ୍ରିୟତାର ଅଭୟ ମନ୍ତ୍ର ପ୍ରଦାନ କରିଛନ୍ତି । ଜଟାଧାରୀ ବାବୁ ପତ୍ନୀଙ୍କ ପ୍ରସ୍ତାବରେ ପ୍ରୀତ ହେଲେ । ରାତ୍ରିଭୋଜନ ଶେଷ କରି ସ୍ୱାମୀଜୀଙ୍କୁ ଧ୍ୟାନ କରି ଶୋଇଲେ । ପରଦିନ ବ୍ରାହ୍ମ ମୁହୂର୍ତ୍ତରୁ ସ୍ନାନ ଶୌଚ ସାରି ପତ୍ନୀଙ୍କୁ ସାଥୀରେ ଧରି ବାହାରିଗଲେ ସ୍ୱାମୀଜୀଙ୍କ ଦର୍ଶନ ପାଇଁ । ସୁନନ୍ଦା ଅପେକ୍ଷା କରିଥିଲେ । ଏମାନେ ପହଞ୍ଚିବାରୁ ଭିଡ଼ ଠେଲି ସ୍ୱାମୀଜୀଙ୍କ ପାଖକୁ ନେଇଗଲେ । ପରିଚିତ କରାଇ ଦେଲେ । ଜଟାଧାରୀ ବାବୁ ସସ୍ତ୍ରୀକ ଲମ୍ବ ହୋଇ ସ୍ୱାମୀଜୀଙ୍କ ଗୋଡ଼ତଳେ ପଡ଼ିଗଲେ ।

ଭିଡ଼ କମିବା ପରେ ସ୍ୱାମୀଜୀ ଜଟାଧାରୀ ବାବୁଙ୍କୁ ପାଖରେ ବସାଇ ଅଭୟ ପ୍ରଦାନ କଲେ । "ବତ୍ସ ! ଭୟଙ୍କ ପଡ଼ ନାହିଁ । ଧୈର୍ଯ୍ୟ ଧର । ଭାରତର

ନେତା କିମ୍ବା ମନ୍ତ୍ରୀଟେ ହେବା ବହୁ ଭାଗ୍ୟର କଥା । ପୂର୍ବ ଜନ୍ମ ତପସ୍ୟାର ଫଳ । ଇସ୍ତଫା ଦେବା କଥା ମନରୁ ପୋଛି ପକାଅ । କଳେବଳେ ଚୌକିରେ ବସି ଲୋକଙ୍କୁ ଭୁଲେଇ ସର୍ବସ୍ୱ ଲୁଟ କରିବା ହିଁ ରାଜନୀତିର ମୂଳମନ୍ତ୍ର ।

"ଜନପ୍ରିୟତା ହାସଲ କରିବା ପାଇଁ ଟିକିଏ ସୂକ୍ଷ୍ମଚିନ୍ତା ଏବଂ ସାବଧାନତା ଆବଶ୍ୟକ । ମୂଳକଥା ହେଉଛି ଧୈର୍ଯ୍ୟ । ଧୈର୍ଯ୍ୟହରା ହେଲେ ଆଦୌ ଚଳିବ ନାହିଁ । ସବୁ ପୁଣି ଭାଗ୍ୟର କଥା । ନିନ୍ଦା-ପ୍ରଶଂସା, ଫୁଲମାଳ, ଯୋତାମାଳ, ହାରିବା, ଜିତିବା, କ୍ଷମତା ଦଖଲ କରିବା ସବୁ କାଇଦାର ଖେଳ । ଭାଗ୍ୟରେ ଥିଲେ ତମେ ଲୋକପ୍ରିୟତାର ଶୀର୍ଷରେ ପହଞ୍ଚି ପାରିବ । ଏତେ ବିପୁଳ ସମ୍ପତ୍ତିର ଅଧିକାରୀ ହେବ ଯେ ଦଶଗଣ୍ଡା ସୁଖରାମ, ଜୈନ ବ୍ରଦର୍ସ ଆଉ ହର୍ଷଦ ମେହେଟାଙ୍କୁ ଚାକର ରଖିପାରିବ । ପି. ଭି. ଅଧୈର୍ଯ୍ୟ ହୋଇ ପଡ଼ିବାରୁ ସବୁ କାରସାଦି ଧରା ପଡ଼ିଗଲା । ମୋ କଥା ମାନିଲନି । ଏବେ ଅବସ୍ଥା ଅସମ୍ଭାଳ ।" ତାଙ୍କ ହାତକୁ ଟାଣି ନେଇ ନିରେଖି ଦେଖିଲେ । କହିଲେ, "କିଛି ଚିନ୍ତା କର ନାହିଁ । ମୁଁ ଅଛି । ସବୁ ଠିକ୍ ହୋଇଯିବ ।"

ସ୍ୱାମୀଜୀଙ୍କ କଥା ଶୁଣି ଜଟାଧାରୀ ବାବୁ କୃତ୍ୟ କୃତ୍ୟ ହୋଇଗଲେ । ପାଦ ଧରି କହିଲେ, "ମୋତେ ଇଲମ ଦିଅନ୍ତୁ ବାବା । ଆପଣ ଯାହା କହିବେ ମୁଁ ତାହା କରିବି । ମୋର ଦରକାର ଜନପ୍ରିୟତା ଏବଂ ସମ୍ପତ୍ତି । ମୁଁ ଆପଣଙ୍କ ପାଇଁ ନୂଆ ଆଶ୍ରମଟେ କରିଦେବି । ମାଲମାଲ କରିଦେବି ।" ସ୍ୱାମୀଜୀ ଜଟାଧାରୀଙ୍କ ପିଠି ଅାଉଁସି ଦେଇ ସ୍ନେହବୋଳା କଣ୍ଠରେ କହିଲେ, "ନୂଆ ନୂଆ ସ୍ଲୋଗାନ ଠିକ୍ କର । ମନଭେଳା କଥା କହି ଶିଖ । ଚରଣ ଧରି ଭେଟ ମାଗ ପୁଣି ଚୁଟି ଧରି ଗୋଇଠା ମାର । ତଥାପି ଲୋକେ ତମ ପଛରେ ଜିନ୍ଦାବାଦ୍ ଜିନ୍ଦାବାଦ୍ ଧ୍ୱନି ଦେଇ ନସର ପସର ହେଉଥିବେ । ପ୍ରତିଶ୍ରୁତିର ପାଏସ୍ ଖୁଆଅ । ନୂଆ ନୂଆ ଯୋଜନାର ଟନିକ୍ ପିଆଅ । ଇହା କରିଦେବି ତାହା କରିଦେବିର ଗନ୍ଧ ଶୁଙ୍ଘାଅ । ଶତ୍ରୁକୁ ଦେଖିଲେ ବି ଦାନ୍ତ ନେଫିଡ଼ି ମନ ଜିଣା ହସ ମେଞ୍ଚେ ପାନଖିଆ ନାଲି ଓଠରେ ଫୁଟେଇ ମହତାବୀ ଢଙ୍ଗରେ "କିଓ କେମିତି ଅଛ" ବୋଲି ପଚାର । ମଦ ପିଅ କିନ୍ତୁ ନିଶାମୁକ୍ତି ଆନ୍ଦୋଳନର ନେତୃତ୍ୱ ନିଅ । ନାରୀ ଧର୍ଷଣ କର ମାତ୍ର ମହିଳା ସୁରକ୍ଷା ସମିତିର ଅଧ୍ୟକ୍ଷ ହୁଅ । ସୁଇସ୍ ବ୍ୟାଙ୍କରେ ଟଙ୍କା ରଖ । ବେଳେବେଳେ ପେଟ କାଙ୍ଗାଳିଆଙ୍କ ମୁହଁକୁ କିଛି ଫୋପାଡ଼ି ଦିଅ । ଗାନ୍ଧିଜୀଙ୍କ ନୀତି ଆଚରଣ କରି ପ୍ରଥମେ ପଦଯାତ୍ରା ଆରମ୍ଭ କର । ପଦଯାତ୍ରା ମାଧ୍ୟମରେ ତମର ଜନପ୍ରିୟତା ଜବର୍ଦ୍ଦସ୍ତ ବଢ଼ିଯିବ । ସନ୍ଦେହ ନାହିଁ ।"

ତମର ସବୁ ସମସ୍ୟା ତୁଟିଯିବ । ବିରୋଧୀମାନେ ଦାନ୍ତ କାମୁଡ଼ି ନୀରବ ରହିବେ । ଭାରତୀୟ ଗଣତନ୍ତ୍ରରେ ରାଜନୀତି ଏକ ରାଲ୍ । କାଇଦା କରି ଖେଳି ପାରିଲେ ହେଲା । କିନ୍ତୁ ସର୍ବଦା ମନେ ରଖିଥିବ "ପଦଯାତ୍ରାର ମହିମା ଅପରମ୍ପାର" ।

ଜଟାଧାରୀବାବୁ ସ୍ୱାମୀଜୀଙ୍କଠାରୁ ଇଲମ ନେଇ ଫେରିଲେ ଏବଂ ସଙ୍ଗେ ସଙ୍ଗେ ନିଜର ରାମରା, ବେଲରାଙ୍କୁ ଡାକି କହିଲେ, "କାଲିଠାରୁ ମୁଁ ପଦ-ଯାତ୍ରା କରିବି । ତମେ ସବୁ କ୍ଷେତ୍ର ପ୍ରସ୍ତୁତ କର ।" ଜଣେ ପାଖ ଲୋକ କହିଲା, "ଭାରି ବଢ଼ିଆ ହେବ । ଆମ ଦେଶରେ ମହାତ୍ମାଗାନ୍ଧୀ, ବିନୋବାଜୀ, ରାଜୀବ ଗାନ୍ଧୀ, ଭି.ପି. ସି.ଭି, ଚନ୍ଦ୍ରଶେଖର, ଜେ.ବି ବ.ବି ସମସ୍ତେ ପଦ-ଯାତ୍ରା କରିଛନ୍ତି । ଅବଶ୍ୟ ଆଡ଼ଭାନି, ରାମାରାଓ, ଦେବୀଲାଲ, ବିଜୁ ରଥଯାତ୍ରା କରିଛନ୍ତି ।

ପରଦିନ ସକାଳୁ ସକାଳୁ ଜଟାଧାରୀ ବାବୁ ନିଜର ସମର୍ଥକମାନଙ୍କୁ ନେଇ ପଦଯାତ୍ରା ଆରମ୍ଭ କଲେ । ରାମରାମାନେ ତାଙ୍କର ଜୟଧ୍ୱନି ଦେଲେ । ମାତ୍ର ଲୋକେ ତାଙ୍କୁ ଦେଖି ହସିଲେ, ମୁହଁ ଫେରାଇ ନେଲେ । ବିରୋଧୀଦଳିଆ ଟୋକାମାନେ ପାଟି କଲେ "ମଦୁଆ ମନ୍ତ୍ରୀ, ବେଧୁଆ ବିଧାୟକ ଫେରିଯାଅ । ନଚେତ୍ ପଚାଅଣ୍ଡା, ଟମାଟର ବର୍ଷା ହେବ । ଯେଉଁ କୋଣକୁ ଗଲେ ସେଇ ଗୋଟିଏ କଥା । ଜଟାଧାରୀ ବାବୁ ବାଧ୍ୟ ହୋଇ ଫେରି ଆସିଲେ ଏବଂ ସ୍ୱାମୀଜୀଙ୍କ ପାଖକୁ ଯାଇ ସବୁକଥା ଅବଗତ କରାଇଲେ ।

ସ୍ୱାମୀଜୀ ହସିହସି କହିଲେ, "ବତ୍ସ ! ପଦଯାତ୍ରାର ପ୍ରକୃତ ଅର୍ଥ ତମେ ବୁଝିପାରିଲ ନାହିଁ । ପାଦରେ ଚାଲିଚାଲି ଏ ଯୁଗରେ କିଏ ପଦଯାତ୍ରା କରୁଛି ? ସମସ୍ତେ କ'ଣ ଗାନ୍ଧୀ ମହାତ୍ମା ? ଖୋଲା ଜିପ୍‌ରେ, କାର୍‌ରେ ଗସ୍ତ କରିବ । ସବୁବେଳେ ନିଜର ପଦ ପଦବୀକୁ ସମ୍ଭାଳି ରଖିବା ପାଇଁ ଚେଷ୍ଟା କରିବ । ମାନେ ସ୍ଥିତିମତ ଅଭିନୟ କରିବାକୁ ହେବ । କୋଉଠି ବନ୍ୟା ହେଲା, ଦୁର୍ଭିକ୍ଷ ପଡ଼ିଲା, ଦଙ୍ଗା ହେଲା, ଏସବୁର ଖବର ରଖ । ସେଇ ଅଞ୍ଚଳକୁ ଯାଇ କିଛି ବିଞ୍ଚି ଦେବ । ସହାୟତା ପାର୍ଣ୍ଣି ଗଠନ କରି ବଡ଼ବଡ଼ ବ୍ୟବସାୟୀ, କମ୍ପାନୀଙ୍କଠାରୁ ଦାନ ଗ୍ରହଣ କର । ସେଥିରୁ କିଛି ଲୋକଙ୍କ ପାଇଁ ବୁଣି ଦେଇ ଅବଶିଷ୍ଟ ବାଟ ମାରଣା କରିନେବ । କେହି ଟେର ପାଇବେ ନାହିଁ । ଦଙ୍ଗା ହେଉନଥିଲେ ଭିଆଇ ଦିଅ । ଦୁଇ ସମ୍ପ୍ରଦାୟ ମଧ୍ୟରେ ଝଗଡ଼ା ଲଗାଇ ଦେଇ ତମେ ସମାଧାନ କରିବାକୁ ଯାଅ ।

ମଝିରେ ମଝିରେ ଜନଗହଳି ବଜାରରେ ବୋମା ଆତଙ୍କ ଖେଳେଇ ଦିଅ । ଝୋପଡ଼ି ପଡ଼ାରେ ନିଆଁ ଲଗେଇ ଦିଅ । ନିଜେ ଯାଇ ଲୋକଙ୍କୁ ସାହାଯ୍ୟ ବାଣ୍ଟ । କିଛି ଗୁଣ୍ଡା, ବଦମାସ୍‌ଙ୍କୁ ହାତରେ ରଖିଥିବ । ସେଇମାନଙ୍କ ମାଧ୍ୟମରେ ସବୁକିଛି କରୁଥିବ । ନିଜେ ଯେମିତି ଧରା ନପଡ଼ । ସାବଧାନ୍ । ନହେଲେ ମାଡ଼ କୁଇଣ୍ଟାଲ ଖୁବ୍ ଶସ୍ତା ହୋଇଯିବ ।

ଏଥର ଜଟାଧାରୀ ବାବୁ ସବୁ ସମଝି ଗଲେ । ରାଜ୍ୟରେ ଯୋଉ ଅଞ୍ଚଳରେ ବନ୍ୟା ହେଲେ ଆଗ ଯାଇ ହାଜର ହେଲେ । ଚୂଡ଼ା ଗୁଡ଼ଳ ବାଣ୍ଟିଲେ । ଲମ୍ବା ଚଉଡ଼ା ବିବୃତ୍ତି ଦେଲେ । ମରୁଡ଼ି ଅଞ୍ଚଳ ଗସ୍ତ କଲେ । ରିଲିଫ ବାଣ୍ଟିଲେ । ଲୋକେ ତାଙ୍କର ଜିନ୍ଦାବାଦ କଲେ । ସହରରେ ଦି'ଥର ଦଙ୍ଗା ଭିଆଇ ନିଜେ ଯାଇ ସମାଧାନ କଲେ । ଶାନ୍ତି କମିଟିର ସଭାପତି ହେଲେ । ମନ୍ଦିରକୁ ଗଲେ । ଗରିବ ଦୁଃଖୀ, ଭିକାରୀଙ୍କୁ ଲୁଗା ବାଣ୍ଟିଲେ । ଅନ୍ନଛତ୍ର ଖୋଲିଲେ । ଏସବୁ ପାଇଁ ଅର୍ଥ ଯୋଗାଡ଼ କରିବା ଆଦୌ କଷ୍ଟକର ହେଲା ନାହିଁ । ବ୍ୟବସାୟୀମାନେ ସବୁ ଯୋଗାଇ ଦେଲେ । ପରୋକ୍ଷରେ ଜଟାଧାରୀ ବାବୁ ସେମାନଙ୍କୁ ନାନାଦି ଦୁର୍ନୀତି, ଅପମିଶ୍ରଣ ସକାଶେ ଖୋଲମ ଖୋଲା ଲାଇସେନ୍‌ସ ଦେଲେ । ଯେଉଁମାନେ ତାଙ୍କୁ ଦୂର୍‌ଦୂର୍ କରୁଥିଲେ ସେଇ-ମାନେ ଆଜି କହୁଛନ୍ତି "ଜଟାଧାରୀ ବାବୁ ଆମରି ନେତା, ଜିନ୍ଦାବାଦ୍, ଜିନ୍ଦାବାଦ୍ ।" ବନ୍ୟା ସହାୟତା ପାଣ୍ଠି, ଦଙ୍ଗା ସହାୟତା କୋଷ, ମରୁଡ଼ି ସାହାଯ୍ୟ ପାଣ୍ଠି, ବିକଳାଙ୍ଗ ଉନ୍ନୟନ କୋଷ, ବିଧବା କଲ୍ୟାଣ ପାଣ୍ଠି; ଶରଣାର୍ଥୀ ଥଇଥାନ କମିଟି, ଆଞ୍ଚଳିକ ଉନ୍ନୟନ ପରିଷଦ, ପରିବେଶ ସୁରକ୍ଷା ସମିତି, ମହିଳା ଶିଶୁ ବିକାଶ ସମିତି, ବୁଢ଼ାବୁଢ଼ୀ ଥଇଥାନ କମିଟି, ନିଶା ନିବାରଣ ପରିଷଦ ଆଦି ଅନେକ ପାଣ୍ଠି, ସଂସ୍ଥା ଖୋଲି ସବୁଥିରେ ନିଜେ ମୁଖିଆ ହୋଇ ନିଜ ଲୋକଙ୍କୁ କର୍ମକର୍ତ୍ତା କରି ଘନଘନ ପଦଯାତ୍ରା କରି ସେ ଆଜି ବେଶ ଜନପ୍ରିୟ ଅପ୍ରତିଦ୍ୱନ୍ଦୀ ନେତା । ତାଙ୍କର ଏବେ ଆଠ ଦଶଟି ଫ୍ୟାକ୍‌ଟ୍ରି, ପୁରୀ, ଭୁବନେଶ୍ୱର, ଦିଲ୍ଲୀ, କଲିକତାରେ ଦାମୀ କୋଠା, ବ୍ୟାଙ୍କ ବାଲାନ୍‌ସ କଥା ନ କହିଲେ ଭଲ । ବର୍ତ୍ତମାନ ଖୋଦ୍ ମୁଖ୍ୟମନ୍ତ୍ରୀ ବି ତାଙ୍କ ପାଖରେ ନ୍ୟୁନ ହୋଇ ଯାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ଭାରତୀୟ ପେଟ

ଶୀର୍ଷକଟି ଦେଖିଦେଇ ଭୁଲ ବୁଝିବେନି ଆଜ୍ଞା । ଏହା ଡକ୍ଟରେଟ ପାଇଁ ଥେସିସ୍ ନୁହେଁ । ମନଗଢ଼ା ଆଲ୍‌ତୁ ଫାଲତୁ କାହାଣୀ ବୋଲି ବି ଭବିବେନି । ଭଲ ଭବରେ ମନ ଲଗେଇ ପଢ଼ି ଦଣ୍ଡେ ଆଖି ବନ୍ଦ୍ କରି ଧ୍ୟାନରେ ବସିଗଲେ ରୁପେଲୀ ପରଦାରେ ଛବି ଦେଖିଲା ଭଳି ଆମ ସମାଜର ଜେରକ୍ସ କପିଟିଏ ନାଚି ଉଠିବ । ତାପରେ ମୋ କଥାକୁ ବିଶ୍ୱାସ ନକରି ଯିବେ କୁଆଡ଼େ ?

ହଁ କ'ଣ କହୁଥିଲି କି, ପେଟ ଆଜ୍ଞା, ପେଟ । ପିଠି ନୁହେଁ କି ହାତ-ଗୋଡ଼ ନୁହେଁ । ନିଘେଳା ପେଟ । ଟିକିଏ ବି ଭେଜାଲ ନାହିଁ । ପେଟ ବିନା ଜୀବଜଗତର ସ୍ଥିତି ଅସମ୍ଭବ । କ୍ଷୁଦ୍ର ପିପିଲିକା ଠାରୁ ଆରମ୍ଭ କରି ବିରାଟକାୟ ହସ୍ତୀ, ତିମି ଆଦି ସମସ୍ତେ ପେଟଧାରୀ । ଦେଖନ୍ତୁ ଆଜ୍ଞା, ଆପଣଙ୍କ ପେଟ, ମୋ ପେଟ, ତାଙ୍କ ପେଟ, ଯାଙ୍କ ପେଟ, ରମା ପେଟ, ଦାମା ପେଟ, ମନ୍ତ୍ରୀଙ୍କ ପେଟ, ଯନ୍ତ୍ରୀଙ୍କ ପେଟ, ରାଣୀ ପେଟ, କାଣୀ ପେଟ, ଚାକରାଣୀ ପେଟ, ଭିକାରୀ ପେଟ, ଶିକାରୀ ପେଟ, ବୁଖାରୀ ପେଟ, ଓକିଲ ପେଟ, ଦଲାଲ ପେଟ, ନେତା ପେଟ, କୂଜ ପେଟ, ନାରୀପେଟ, ଦାରୀ ପେଟ, ମାଲିକ ପେଟ, କୁଲି ପେଟ, ହାକିମ ପେଟ, ଚପରାଶି ପେଟ, ମହାଜନ ପେଟ, ଖାତକ ପେଟ, ଗୁଣ୍ଡା ପେଟ, ଭେଣ୍ଡା ପେଟ, ତୋଡ଼ି ପେଟ, ଢୋଲ ପେଟ, ଥାକୁଲୁ ଥୁକୁଲୁ ଅନ୍ତଲ ପେଟ, ସବୁ ଆଜ୍ଞା ଭରତୀୟ ପେଟ ।

ଏଇ ପେଟ ପାଇଁ କେତେ ନାଟ । କିଏ ହେଉଛି ଛଟପଟ ତ କିଏ ଖୋଲିଛି ମଠ । ମନ୍ଦିରରେ କିଏ କରୁଛି ନାଟ । ମସ୍‌ଜିଦ୍ ବାଲା ଧରିଛି ଆଣ୍ଡ । ଗୀର୍ଜାରେ କିଏ ପଢ଼ାଏ ପାଠ । ମେଳାରେ କିଏ କଢ଼ାଏ ବାଟ । ଏଇ ପେଟ ପାଇଁ କେତେ ହାତାହାତି, ଗୋଡ଼ାଗୋଡ଼ି, ଚଢ଼ାଚଢ଼ି, ଗଡ଼ାଗଡ଼ି, ମଡ଼ାମଡ଼ି, ଧରମାର, ଘୋଷରଟଣା, ହାଣକାଟ, ଡିସୁମ ଢାସୁମ, ଗୁଡ଼ୁମ ଗୁଡ଼ୁମ୍; ଢୋଡ଼ାଏ । କେତେ ଶୋଷଣ ଜଷଣ, ଜ୍ୱାଳା ଯନ୍ତ୍ରଣା ଏଇ ପେଟପାଇଁ । ନାରୀ ସାଜେ ଦାରୀ, ଭଇ ସାଜେ ଭଗାରି, କଳା ହୁଏ ଧଳା, ଧଳା ହୁଏ

କଳା । ମିଛ ହୁଏ ସତ, ସତ ହୁଏ ମିଛ । ସ୍ଲୋଗାନ ଉଠେ, ଭଷଣ ଛୁଟେ, ଝଡ଼ ଉଠେ, ବୋମା ଫୁଟେ, ଛୁରୀ ଚ୍ଲେ, ତାଲ୍ଲ ଝୁଲେ । କିସ୍ମତ ବି ଖୋଲେ ।

ଚ୍ଉଳରେ ଗୋଡ଼ି ମିଶେ, ତେଲରେ ରେପ୍‌ସିଡ୍ ମିଶେ । ମଣିଷ ଯା ଘରେ ତା' ଘରେ ପଶେ । ଓ୍ୱାଗନ୍ ଭଙ୍ଗେ । ଗୋଦାମ ଲୁଟେ । ନିଆଁ ଜାଳେ । ସବୁକିଛି ସମ୍ଭବ ହୁଏ ଖାସ ଏଇ ପେଟ ପାଇଁ । ଚ୍ଖଣ୍ଡେ ମାତ୍ର ଏଇ ପେଟ । ଅଥଚ ଯାରି ପାଇଁ ଏତେ ସବୁ ନାଟ ।

ପେଟ ସମ୍ବନ୍ଧୀୟ ଗୌରଚନ୍ଦ୍ରିକା ପଢୁପଢୁ ଆପଣମାନେ ବିରକ୍ତ ହୋଇ ପଡ଼ିଥିବେ । ରାଗ ପଞ୍ଚମକୁ ଉଠି ଯାଇଥିବ । ହାଁ...ହାଁ ଢିମା ଢିମା କରି ମୁହଁ ଭୁରୁକୁଣ୍ଡା କରି, ମୁଠି ଉଠେଇ ମାଡ଼ି ଆସନ୍ତୁନି । ଶାନ୍ତି, ଶାନ୍ତି, ଓମ୍ ଶାନ୍ତି । ଆସନ୍ତୁନା, ସାମାନ୍ୟ ଜଳଯୋଗ ସହିତ କ୍ଷଣିକ ମନ ପରିବର୍ତ୍ତନ ପାଇଁ ଆମ ରାଜଧାନୀ ଆଡ଼େ ଘେରାଏ ବୁଲି ଆସିବା । ଲାଞ୍ଚ ଦେଉଛି କିମ୍ବା ଖୋସାମତ୍ କରୁଛି ବୋଲି ଭବିବେନି । ଭବିଲେବି ଦୁଃଖ ନାହିଁ । ଆମ ଦେଶରେ ତ ସବୁ କଥାରେ ଧରାଧରି, ସୁପାରିଶ୍, ଦିଆନିଆ, ରାଧେରାଧେ । ମୁଁ ଆପଣ-ମାନଙ୍କୁ ରାଜଧାନୀ ନେଉଛି ଏଇଥି ପାଇଁ ଯେ, ମୋ କାହାଣୀର ନାୟକ ସେଇଠି ଅଛି । ଆସନ୍ତୁ, ତା ସହିତ ପରିଚିତ କରେଇ ଦେଉଛି ।

ହାଁ ହାଁ ଆଉ ଆଗକୁ ଧପାଲିଛନ୍ତି କାହିଁକି ? ଏଇ ପରା ଆମ ନୂଆ ରାଜଧାନୀ ଭୁବନେଶ୍ୱର । ଯେତେ ଯୋଜନା, ପ୍ରଯୋଜନା, ସୂଚନା, ପ୍ରସ୍ତାବନା, ବାଟମାରଣା ସବୁ ଏଇଠି ହୁଏ । ଘେରାଓ, ଆଇନ ଅମାନ୍ୟ, ହରତାଳ, ଦଳବଦଳ, କରତାଳରେ ଭରପୁର । ଏଇପଟେ ଆସନ୍ତୁ ମାଷ୍ଟର କ୍ୟାଣ୍ଟିନ୍‌ରୁ ପି. ଏମ୍. ଜି. ଦେଇ । ଏଇଟା ପୁରୁଣା ବସଷ୍ଟାଣ୍ଡ, ଏପଟେ ସୂଚନା ଭବନ । ଆଗରେ ସଚିବା-ଳୟ । ଲୋକ ପ୍ରତିନିଧି ମାନଙ୍କର ଆଖଡ଼ା ଘର । ଧସ୍ତାଧସ୍ତି ଚପଲ ଫିଙ୍ଗା, ମୁଥ ମଗମରି, ଚେୟାର ଉଠାଉଠି, ମାଇକ୍ରୋଫୋନ ଛଡ଼ା-ଛଡ଼ି, କଲର ଝିଙ୍କାଝିଙ୍କି, ବାଦବିବାଦ, କଥା କଟାକଟି, ପଟାପଟି, କୋଳା-କୋଳି, ନିନ୍ଦା-ଗାଳି, ଆଦର, ଚରିତ୍ର ସଂହାର ସବୁ ଏଇଠି ଚ୍ଲେ । ସେପଟେ ସେଇ ଆଗ ଛକ ମୋଡ଼ରେ ଦେଖୁଛନ୍ତି ଏକ ନଣ୍ଡା ବରଗଛ ? ବୌଦ୍ଧ ଯୁଗରୁ ଖୋଲା ଆକାଶକୁ ଚ୍ହିଁ ହୁଏତ ନିର୍ବାଣର ସ୍ୱପ୍ନ ଦେଖୁଛି । ମୋ କାହାଣୀର ନାୟକ ସେଇ ଥୁଣ୍ଟା ବରଗଛ ତଳେ ଅନାବନା ଘାସ ପତର, ଭଙ୍ଗା ଖପରା, ଛିଣ୍ଡାକନା, ରସଥାଳି, ଗିନା ଗହଣରେ ଏକାନ୍ତ ଅସହାୟ ଭବରେ ପଡ଼ିରହିଛି

ଭଗ୍ୟକୁ ଆଦରି । କ'ଣ ଆଉ କରନ୍ତା ସେ ? ତାକୁ ବା ପଗ୍ଭରେ କିଏ ? ଆଜିକାଲି ତ ଭିକ ମୁଠେ ବି ମିଳୁ ନାହିଁ ।

ଭଲଭବରେ ନିରେଖି ଦେଖନ୍ତୁ ଆଜ୍ଞା । ନିହାତି ଅପରିଷ୍କାର, ଅପରିଛନ୍ନ, ଚମ ଧୂଡ଼ୁ ଧୂଡ଼ୁ ଅସ୍ଥିକଙ୍କାଳସାର ମଡ଼ିଆ ଭିକାରିଟିଏ । ପେଟ ସହିତ ପିଠି ଲଗି ଯାଇଛି । ସତେ ଯେମିତି ନିବିଡ଼ ପ୍ରେମରେ ପେଟ ପିଠି ଆଲିଙ୍ଗନାବଦ୍ଧ । ଚକ୍ଷୁ କୋଟରଗତ । ବାମ ଗାଲ ସହିତ ଡାହାଣ ଗାଲର ଅବିଚ୍ଛିନ୍ନ ସମ୍ପର୍କ । ଶରୀରର ସମସ୍ତ ଜୀର୍ଣ୍ଣ ଅସ୍ଥି ସହିତ ଚର୍ମର କି ଘନିଷ୍ଠତା ? ବାସ୍ତବତାର କି ଭୀଷଣ ରୂପ ? ଯଦି କିଛି ଅବାସ୍ତବତା ଥାଏ ତେବେ ତାର ଛିଣ୍ଡା ତାଳିପକା ଶାର୍ଟ ଖଣ୍ଡିକ । ଭିକାରୀକୁ ହାଙ୍ଗର ଭବି ଅଧାଝୁଲ ଅବସ୍ଥାରେ ରହିଛି । ଇସ୍ କି ଦୁର୍ଗନ୍ଧ ? ମାଛି ଭଣ ଭଣ କରୁଛନ୍ତି । ଘୃଣା ଲଗୁଥିବ ନିଶ୍ଚିତ । ଟିକିଏ ଦୂରେଇ ଆସନ୍ତୁ ଆଜ୍ଞା । ଆପଣ ମାନେ ସଭ୍ୟ, ଶିକ୍ଷିତ, ମାର୍ଜିତ, ଅତ୍ୟାଧୁନିକ ଏକବିଂଶ ଶତାବ୍ଦୀର ପୁରୁଷ ପୁଙ୍ଗବ । ସାମାନ୍ୟ ଗୋଟିଏ ଦୀନହୀନ ଭିକାରୀର ଦୟନୀୟତା ସଂକ୍ରାମକ ରୋଗର ଜୀବାଣୁ ଭଳି ଆପଣ ମାନଙ୍କର ରୁଚିଶୀଳ ମନକୁ ଆକ୍ରାନ୍ତ କରିପାରେ । କିନ୍ତୁ, ବିଶ୍ୱାସ କରନ୍ତୁ ବା ନକରନ୍ତୁ, ସେଇ ଘୃଣ୍ୟ ଭିକାରୀ ହିଁ ଏଇ କାହାଣୀର ମୁଖ୍ୟ ନାୟକ । ତାକୁଇ କେନ୍ଦ୍ର କରି କିପରି କେତେଜଣ ଅଜଣା ଅଶୁଣା ଅଖ୍ୟାତ ବ୍ୟକ୍ତି ରାତାରାତି ବଡ଼ଲୋକ ହୋଇ ପାରିଲେ, ତାକୁଇ ନିଶୁଣୀ ସଜେଇ ଧନମାନ ପ୍ରାଚୁର୍ଯ୍ୟର ସର୍ବୋଚ୍ଚ ଶିଖରରେ ପହଞ୍ଚି ପାରିଲେ ସେଇମାନଙ୍କ କଥା ହିଁ କହିବାକୁ ଯାଉଛି ।

ସେମାନଙ୍କ ମଧ୍ୟରେ ଜଣେ ଲେଖକ, ଜଣେ ରାଜନୈତିକ ନେତା, ଜଣେ ସାମ୍ବାଦିକ, ଜଣେ କାର୍ଟୁନିଷ୍ଟ ଏବଂ ଜଣେ ଚଳଚ୍ଚିତ୍ର ପ୍ରଯୋଜକ-ନିର୍ଦ୍ଦେଶକ ଅଛନ୍ତି । ଆପଣମାନଙ୍କ ମଧ୍ୟରୁ ଅଧିକାଂଶ ସେମାନଙ୍କୁ ଜାଣିଥିବେ । ସବୁରି ଭଗ୍ୟ ପରିବର୍ତ୍ତନ, ଆଶୁ ପ୍ରଗତି ମୂଳରେ ଯେ, ଏଇ ମଡ଼ିଆ ଭିକାରୀ, ଏକଥା ହୁଏତ ଆପଣ ମାନେ ବିଶ୍ୱାସ କରି ନପାରନ୍ତି । ଅବିଶ୍ୱାସ୍ୟ ହେଲେବି ଏକଥା ଏକାନ୍ତ ସତ୍ୟ ।

ପୁରୁଣା ଭୁବନେଶ୍ୱର ଡାକବଙ୍ଗଳା ଛକ ପାଖରେ ସେଇ ଯେଉଁ ଭବ୍ୟ ଅଟ୍ଟାଳିକା, ତାର ମାଲିକ କିଏ ଜାଣନ୍ତି ? ମିଃ ମାଳ୍ୟବନ୍ତ ଦାସପଟ୍ଟନାୟକ । ଲବ୍ଧ ପ୍ରତିଷ୍ଠିତ କବି, ସାହିତ୍ୟିକ ଏବଂ କଥାକାର । ଦିନ ଥିଲା ସାମାନ୍ୟ ଲେଖାଟିଏ ଛପିବା ସକାଶେ ଛିଣ୍ଡା ଚପଲ ଘୋଷାରି କେତେ ସମ୍ପାଦକ, ପ୍ରକାଶକଙ୍କର ଦ୍ୱାରସ୍ଥ ହେଉଥିଲେ । କିନ୍ତୁ ; ଆଜି ? ତାଙ୍କ ଫାଟକ ଆଗରେ ସଂପାଦକ, ପ୍ରକାଶକ ମାନଙ୍କର ଲାଇନ୍ ଲଗୁଛି । ସତେ ଯେମିତି ସେଇଟା ଏକ

କଣ୍ଟ୍ରୋଲ ଦୋକାନ । ଏସବୁ କିପରି ସମ୍ଭବ ହେଲା ଜାଣନ୍ତି ? ନା—ହୁଏତ କଳ୍ପନା ବି କରି ନଥିବେ । ତେବେ ଶୁଣନ୍ତୁ ।

ଦିନେ ସକାଳେ ଭରାକ୍ରାନ୍ତ ମନ ନେଇ ରାଜଧାନୀର ଚିକ୍‌କଣ ଚଉଡ଼ା ପିଚୁ ରାସ୍ତାରେ ବୁଲୁବୁଲୁ ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଗଲା ଏଇ ଭିକାରୀ ଉପରେ । ବାସ୍ ବାବୁଙ୍କ ଆଖି ଲାଖିରହିଲା ତାରି ପେଟ ରେ । ପେଟ, ଭିକାରୀର ପେଟ । ସେଇ ପେଟହିଁ ତାଙ୍କ ମନର ଚିନ୍ତାଧାରାକୁ ଓଲଟ ପାଲଟ କରିଦେଲା । ତାର ତୁଳନା ସକାଶେ କେତେ କ'ଣ ଉପମା ଖୋଜି ଖୋଜି ଶେଷରେ ଠିକ୍ କଲେ ତାହା ଏକ ଫୁଟବଲର ବ୍ଲାଡ଼ର । ଏବେ କ୍ରିକେଟ୍ ସିଜନରେ ବାୟୁଶୂନ୍ୟ ଅବସ୍ଥାରେ ପରିତ୍ୟକ୍ତ ହୋଇ ପଡ଼ିରହିଛି । ତାକୁ ଆଧାର କରି ତାଙ୍କ ମନରେ ଜନ୍ମନେଲା ଏକ ନୂତନ ପରିକଳ୍ପନା । ସେ ଲେଖିଲେ ନୂତନ କାହାଣୀ । ଶୀର୍ଷକ ରଖିଲେ ପେଟ । ପ୍ରଗତିଶୀଳ ସ୍ୱାଧୀନ ଭାରତରେ ଏମିତି କେତେ ପେଟ ଖାଦ୍ୟ ବିନା ପିଠିରେ ଲାଗି ପଡ଼ି ରହିଛି । ତାଙ୍କ କାହାଣୀ ଉଚ୍ଚ ପ୍ରଶଂସିତ ହୋଇ ପ୍ରକାଶିତ ପ୍ରସାରିତ, ଅନୂଦିତ ହେଲା । ସେ ହେଲେ ସର୍ବଜନାଦୃତ ଅପ୍ରତିଦ୍ୱନ୍ଦୀ କବି, ସାହିତ୍ୟିକ, କଥାକାର । ଗ୍ରନ୍ଥ ଗ୍ରନ୍ଥ ତାଙ୍କର ଦି'ଗ୍ରଗିଗଣ୍ଡା ବହି ଛପା ହୋଇଗଲା । ଗତାଗତି ଲକ୍ଷ୍ମୀ ଧସେଇ ପଶିଲେ । ଧରାଧରି କରି ରାଜ୍ୟ, କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ଜ୍ଞାନପୀଠ, ଅଜ୍ଞାନ ପୀଠ, ମାରୁତି ଦେବୀ ଇତ୍ୟାଦି ସବୁ ପୁରସ୍କାରରେ ସମ୍ମାନିତ ହେଲେ ।

ଆଜ୍ଞା, ଯେ ହେଉଛନ୍ତି ଚୌଧୁରୀ ଚମ୍ପକଲାଲ ଚଟପଟ ରାୟ ମହାପାତ୍ର । ପ୍ରଭାବଶାଳୀ ନେତା, ଜନଗଣର ଦେବତା, ମାନ୍ୟବର ମନ୍ତ୍ରୀ । ଫାଇଭଷ୍ଟାର ହୋଟେଲ, ସୁରମ୍ୟ ଫ୍ଲାଟ, ଇମ୍ପୋଟେଡ଼ କାର, ସୁଇସ୍ ବ୍ୟାଙ୍କରେ ମୋଟା ଅଙ୍କର ବାଲାନ୍‌ସ । ପୁଅ ଆମେରିକାରେ । ବଡ଼ଝିଅ ଲଣ୍ଡନରେ । ସାନଭାଇ ଏବେ କାନାଡ଼ାରେ । ପୁତୁରା ହଂକଂରେ । ଶଳା ସୁଇଜରଲଣ୍ଡରେ । ଶାଳୀ ସ୍କଟଲଣ୍ଡରେ । ଧରମ ଭଉଣୀ ନେଦରଲାଣ୍ଡରେ । ମଝିଆପୁଅ ଜାପାନରେ । ସବା ସାନଝିଅଟି ଫ୍ରାନ୍‌ସରେ । ତାଙ୍କ ସ୍ତ୍ରୀ ମହିଳା କଲ୍ୟାଣ ବିଭାଗର ସଭାପତି । ମଡ଼ର୍ଣ୍ଣ ବିଉଟି କ୍ଲବର ସମ୍ପାଦିକା । ବିଶ୍ୱ ନାରୀ ସଂଘର ସକ୍ରିୟ ସଦସ୍ୟା । ମାନ, ସମ୍ମାନ, ଖାତିର ଅଛି । ରାଜନୀତିରେ ବାବୁ ଚମ୍ପକଲାଲ ଏବେ ଷଣ୍ଢମାର୍କା ହୀରୋ । ଅପ୍ରତିଦ୍ୱନ୍ଦୀ । ଯୋଉ ଦଳରେ ଥିଲେ ବି ଜିତାପଟ ତାଙ୍କର । ଟିକିଏ ପଛକୁ ଫେରି ଚାହିଁଲେ ଆପଣମାନେ ଜାଣିପାରିବେ ସେ ଥିଲେ ଜଣେ ଅର୍ଦ୍ଧ ଶିକ୍ଷିତ ବେକାର । ଗ୍ରାମ୍ୟ ଟାଉଟର । ଧରାଧରି କରି ଗୁଣ୍ଡାମିରେ ରେକର୍ଡ଼ କରି ଜଣେକ ନେତାଙ୍କର ଚେଲା ବନିଗଲେ ।

ମିନ୍ତୁ କହିବା, ଜାଲ ଜୁଆଚ୍ଚୋରି, ଲୁଣ୍ଠନ, ଶୋଷଣ, ଧର୍ଷଣରେ ପ୍ରବୀଣ ହେବା ପରେ ଏବଂ ତାଙ୍କ ଦଳ କ୍ଷମତାକୁ ଆସିବା ପରେ ସେ ପ୍ରଥମେ ନେତାଙ୍କ ଦୟାରୁ ସରପଞ୍ଚ ହୋଇଗଲେ । ତାପରେ ପେଞ୍ଚ କରି ଗୁରୁଙ୍କୁ ଚିତା କାଟିଲେ । ଅସଲ ମଉକା ଦେଖି ହାଇକମାଣ୍ଡଙ୍କୁ ପଟେଇ ପରବର୍ତ୍ତୀ ନିର୍ବାଚନରେ ଟିକେଟ ଖଣ୍ଡେ ପାଇଗଲେ । କିନ୍ତୁ...ଜିତିବେ କିପରି ? ଏଇ ଚିନ୍ତା ତାଙ୍କୁ ଅହରହ ଘାରିଲା । ଆଜିକାଲିତ ସ୍ଲୋଗାନର ଯୁଗ । ଯେମିତି ହାଓ୍ଵା ବହିବ ସେମିତି ଭୋଟ ଗୁଡ଼ି ଗଡ଼ିବ । ତାଙ୍କ ମନ ଆର୍ମଳା ହୋଇଗଲା । ନୂଆ ସ୍ଲୋଗାନଟେ ଖୋଜି ପାଇଲେନି । କ'ଣ କରିବେ, ଏଇକଥା ଭାବି ଘଣ୍ଟାରେ ଯାଉ ଯାଉ ଦେଖି ପକାଇଲେ ଏଇ ଭିକାରୀଟିକୁ । ମନରେ ତୀବ୍ର ଘୃଣା ଆସୁଥିଲେ ମଧ୍ୟ ମୁଖମଣ୍ଡଳରେ ଆଶା ଭରସାର ଜ୍ୟୋତି ଫୁଟି ଉଠିଲା । ଅନ୍ତର ଫଟାଇ ନୂଆ ସ୍ଲୋଗାନଟେ ଛିଟ୍‌କି ପଡ଼ିଲା । "ଗରିବୀ ହଟାଓ-ପେଟ ଫୁଲଓ" । ଦୀନହୀନ ପେଟ କାଙ୍ଗାଳିଆଙ୍କ ପାଇଁ, ଦୁଃସ୍ଥ ଗରିବ ଜନତାଙ୍କ ପାଇଁ ତାଙ୍କ ଆତ୍ମା ବାହୁନି ଉଠିଲା । ଲମ୍ବା ଚଉଡ଼ା ଭାଷଣ ଦେଇ, ନୋଟ ଧରେଇ, ଭୋଟ ହାତେଇ ନିର୍ବାଚନରେ ବାଜିମାତ୍ କଲେ ।

ସାମାନ୍ୟ କେଇ ଲକ୍ଷ ଉପହାର ନେଇ କ୍ଷମତା ଲଢ଼େଇରେ ଅସନ୍ତୁଷ୍ଟ ଗୋଷ୍ଠୀରେ ସାମିଲ ହୋଇ ଗାଦି ମାଡ଼ି ବସିଗଲେ । ସେ ହେଲେ ମାନ୍ୟବର ମନ୍ତ୍ରୀ । ତାଙ୍କ ଭାଗ୍ୟ ଏମିତି ଅନୁକୂଳ ହେଲା ଯେ ମନ୍ତ୍ରୀତ୍ୱ ତାଙ୍କ ପାଇଁ ଇସ୍ତମୁରାରୀ ପଟ୍ଟା ବନେଇଗଲା । ଯେତେବେଳେ ଯେଉଁ ଦଳ ଶାସନକୁ ଆସୁ ପଛେ ତାଙ୍କ ପାଇଁ ମନ୍ତ୍ରୀପଦ ଥୁଆ । ଦଳ ବଦଳରେ ସେ ବିଶ୍ୱରେକର୍ଡ଼ କରିଛନ୍ତି କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ ।

ଯେ ହେଉଛନ୍ତି ସାମ୍ବାଦିକ ଚରଣ ଚୁଟିଆ ଚିତାକଟା ବାରିକ । ରାଜ୍ୟର ଅଭଲ ନଗର କାମଳ ସାମ୍ବାଦିକ । ଏକକାଳୀନ ରାଜ୍ୟର ଅନେକ ଗ୍ରେଟ ବଡ଼ କାଗଜକୁ ସମ୍ବାଦ ଯୋଗାନ୍ତି । ପ୍ରେସ କ୍ଲବର ମଧ୍ୟ ସେମ୍ପାଦକ । ନିକଟରେ ସେ ଏକ ଅନିୟମିତ ଖବର କାଗଜ ପ୍ରକାଶ କରିବାକୁ ଯାଉଛନ୍ତି । ତାଙ୍କ ମତରେ ଖବରକାଗଜର ମାଲିକ ହେବା କମ୍ ଭାଗ୍ୟର କଥା ନୁହେଁ । କାହା ବିରୁଦ୍ଧରେ ମିଥ୍ୟା ସମ୍ବାଦ ଛାପି, ପୁଣି ପ୍ରତିବାଦ ଦେଇ, ଅଫିସର ମାନଙ୍କୁ ଧମକେଇ, ବିଜ୍ଞାପନ ମାଧ୍ୟମରେ ବେଶ୍ ମାଲମାଲ ହୋଇଯିବା ସାଧାରଣ କଥା ।

ତାଙ୍କର ବି ପ୍ରଗତି ମୂଳରେ ଆଜ୍ଞା ଏଇ ମଡ଼ିଆ ଭିକାରୀ । ଦିନେ ଖୁବ୍ ଚିନ୍ତିତ ମନରେ ବୁଲୁ ବୁଲୁ ଆଶ୍ଚର୍ଯ୍ୟରେ ଚାହିଁ ରହିଲେ ତାଙ୍କୁ । ସତରେ ସେ କ'ଣ

ଦେଖୁଛନ୍ତି ? ପେଟ ନା ପିଠି ? ପିଠି ନା ପେଟ ? ଯଦି ପିଠି ତେବେ ପେଟ କାହିଁ ? ଯଦି ପେଟ ତେବେ ପିଠି ? ପେଟ ନା ପିଠି ? ପିଠି ନା ପେଟ ? ଏମିତି ଅନେକ ଅନୁଶୀଳନ କରିବା ପରେ ସ୍ଥିର କଲେ ଯେ ପେଟ ପିଠି ମିଶି ଏକାକାର୍ ହୋଇ ଯାଇଛନ୍ତି । କମ୍ ଆଶ୍ଚର୍ଯ୍ୟର କଥା ନୁହେଁ ତ ? ତାଙ୍କ ମନରେ ଦେଖାଦେଲା ନୂତନ ଚିନ୍ତାଧାରା । ସ୍ୱାଧୀନ ଭାରତରେ ପେଟର ଏଇ ଦୟନୀୟ ଅବସ୍ଥାକୁ ଆଖି ଆଗରେ ରଖି ସେ ଏକ ଫିଚର ପ୍ରସ୍ତୁତ କଲେ । "ଭାରତୀୟ ପେଟ" । ଧରାଧରି କରି ଏକ ଇଂରାଜୀ ଦୈନିକରେ ଛପାଇ ଦେଲେ । ବେଷ୍ଟ ରିପୋର୍ଟର ଅଫ ଦି ଇୟର ଆଓ୍ୱାର୍ଡ଼ ଝିଙ୍କି ଆଣିବାକୁ ତାଙ୍କୁ ବେଶୀ ସମୟ ଲାଗିଲାନି । ସତକୁ ମିଛ, ମିଛକୁ ସତ, କଳାକୁ ଧଳା କରି କଳାବେପାରୀ, ଦୁର୍ନୀତିଗ୍ରସ୍ତ ନେତା, ଅଫିସରଙ୍କୁ ଘଣ୍ଟ ଘୋଡ଼େଇ ପଛପଟିଆ କାରବାରରେ ସେ ମାଲମାଲ୍ ହୋଇଗଲେ । କୋଠା, ଗାଡ଼ି, ବ୍ୟାଙ୍କ ବାଲାନ୍ସ କୋଉଥିରେ ତାଙ୍କର ଅଭାବ ନାହିଁ ।

ରାମଶେଷାୟା ଜଣେ କାର୍ଟୁନିଷ୍ଟ । ସେ ଦିନେ ହଠାତ୍ ଏଇ ଭିକାରୀଟିକୁ ଦେଖି ତଟସ୍ଥ ହୋଇ ପଡ଼ିଲେ । ତାଙ୍କର ବିଲକ୍ଷଣ ପ୍ରତିଭା ଉବେଇ ଟୁବେଇ ହେଲା । ସଙ୍ଗେ ସଙ୍ଗେ ସେ ତାଏସ୍ଥିରେ ଏକ ସ୍କେଚ କରିନେଇ ସୁନ୍ଦର କାର୍ଟୁନଟିଏ ପ୍ରସ୍ତୁତ କଲେ । ତାଙ୍କ କାର୍ଟୁନର ବିବରଣୀ ଏଇମିତି—"ଗୋଟିଏ ସ୍ଥାନରେ ଭିକାରୀଟି ଆରାମରେ ନିଶ୍ଚଳ ଭାବରେ ଶୋଇଥାଏ । ଦେହର ସବୁ ଅଙ୍ଗ ପ୍ରତ୍ୟଙ୍ଗ ଯେମିତି ସେମିତି । କେବଳ ପେଟ ବଦଳରେ ଏକ ଅସମ୍ଭବ ଗଭୀର ଗର୍ତ୍ତ । ପାଖରେ ନିର୍ମାଣାଧୀନ ବିରାଟ ଅଟ୍ଟାଳିକା । କଣ୍ଟ୍ରାକ୍ଟର ଭିକାରୀର ପେଟରୂପକ ଗର୍ତ୍ତରୁ କୁଲିମାନଙ୍କ ଦ୍ୱାରା ସିମେଣ୍ଟ, ବାଲି, ଲୁହାଛଡ଼, ଇଟା ଆଦି ବାହାର କରଉଥାନ୍ତି । ମିସ୍ତ୍ରୀମାନେ କାର୍ଯ୍ୟବ୍ୟସ୍ତ । ମହାମହିମ ସ୍ୱହିତୈଷୀ, ଦରଦୀପ୍ରାଣ ମନ୍ତ୍ରୀ ମହୋଦୟ ପାଖରେ ଛିଡ଼ା ହୋଇ ନିର୍ମାଣ କାର୍ଯ୍ୟର ତଦାରଖ କରୁଥାନ୍ତି । କାର୍ଟୁନଟିର ନାମ ଥିଲା ଗରିବ ଭାରତୀୟ ପେଟର ଅବଦାନ ।

ଏହା ଏଭଳି ଜନପ୍ରିୟ ହେଲା ଯେ ଗତାଗତି ଆନ୍ତର୍ଜାତିକ ପୁରସ୍କାର ଲାଭ ପୂର୍ବକ ବିଶ୍ୱବିଖ୍ୟାତ ହୋଇଗଲେ । ଧନ, ମାନ, ଯଶ ତାଙ୍କ ପଛରେ ଗୋଡ଼ାଇଲା ।

ଶେଷରେ ଯେ ହେଉଛନ୍ତି ସ୍ୱର୍ଣ୍ଣକମଳଧାରୀ ଚଳଚ୍ଚିତ୍ର ନିର୍ଦ୍ଦେଶକ କନ୍ଦର୍ପ ସୁନ୍ଦର ରସିକଚନ୍ଦ୍ର । ଅନେକ ଦିନରୁ ସଫଳ ଚିତ୍ର ନିର୍ଦ୍ଦେଶକ ହେବାର ଅଭିପ୍ରାୟ ଥିଲେ ମଧ୍ୟ ଅପେରା ଦଳିଆ ବୋଲି ତାଙ୍କୁ କେହି ପସନ୍ଦ କରୁ-

ନଥିଲେ ଦିନେ ସେଇ ଭିକାରୀ ପେଟକୁ ଦେଖି ତାଙ୍କ ପ୍ରାଣରେ ନୂତନ ଆଲୋଡ଼ନ ଖେଳିଗଲା । ମିଃ ମାଲ୍ୟବନ୍ତଙ୍କ କାହାଣୀକୁ ଆଧାର କରି ନିଜେ ପ୍ରଯୋଜକ, ନିର୍ଦ୍ଦେଶକ ସାଜି ଆରମ୍ଭ କଲେ ସଂପୂର୍ଣ୍ଣ ଭିନ୍ନ ସ୍ବାଦର ରଙ୍ଗୀନ ଚଳଚ୍ଚିତ୍ର "ପେଟ ନୁହେଁ ପିଠି", ଭାରତୀୟ ପେଟର ଭିନ୍ନ ଏକ ସ୍ବରୂପ । ଜାତୀୟ ଚଳଚ୍ଚିତ୍ର ଉତ୍ସବରେ ପ୍ରଦର୍ଶନ କରାଇ ସ୍ବର୍ଣ୍ଣକମଳ ସହିତ ମୋଟା ଅଙ୍କର ପୁରସ୍କାର ଝିଙ୍କି ଆଣିଲେ । ଓଡ଼ିଆ ସିନେମା ପ୍ରଯୋଜକମାନେ ସାଧାରଣତଃ ଜଗନ୍ନାଥଙ୍କ ନାମକୁ ବିକି, କିଛି ଦୃଶ୍ୟରେ ତାଙ୍କୁ ଦେଖାଇ, ପଡ଼ୋଶୀ ଭାଷାର ଚଳଚ୍ଚିତ୍ର କାହାଣୀକୁ ଚୋରି କରି, ସାମାନ୍ୟ ଅଦଳ ବଦଳ କରି ମୁହାଇ-ଚେନ୍ନାଇ ମସଲା ଭରି ଜନପ୍ରିୟତା ହାସଲ କରିବାକୁ ଚେଷ୍ଟା କରିଥାନ୍ତି । ମାତ୍ର କନ୍ଦର୍ପ ସୁନ୍ଦର ପେଟକୁ ମୂଳଭିତ୍ତି କରି ଯେତେ ଫିଲ୍ମ କଲେ ସବୁଗୁଡ଼ିକ ବକ୍ସ ଅଫିସରେ ହିଟ୍ ହୋଇଗଲା । ତାଙ୍କ ପ୍ରଯୋଜିତ, ନିର୍ଦ୍ଦେଶିତ ଓଡ଼ିଆ ଚିତ୍ରଗୁଡ଼ିକ ମଧ୍ୟରେ "ପେଟ ନୁହେଁ ପିଠି, ପିଠି ନୁହେଁ ପେଟ, ପେଟର କଥା ପିଠିର ବ୍ୟଥା, ପେଟ କରିଦେଲା ପିଠିକୁ ପର, ପିଠି କହିବ ମୋ ପେଟର କଥା" ଆଦି ବହୁଚର୍ଚ୍ଚିତ । ଲକ୍ଷ୍ମୀ ଆସି କବାଟ ଧଡ଼ଧଡ଼ କଲେ । ରାତାରାତି ବ୍ୟାଙ୍କ୍ ବାଲାନ୍ସ ବଢ଼ି ଚାଲିଲା । ସେ ଆଜି ହଲିଉଡ଼୍‌ରୁ ଓଲିଓଡ଼, ବଲିଉଡ଼୍‌ରୁ ଟଲିଉଡ଼ ଯାଏ ଛୁଇଁ ଯାଇଛନ୍ତି । ତାଙ୍କ ଚିତ୍ରସବୁ ହିନ୍ଦୀ, ଇଂରାଜୀ, ବଙ୍ଗଳାରେ ଡବିଂ ହୋଇଛି । ନଣ୍ଡା ବରଗଛ ତଳର ଏଇ ମଡ଼ିଆ ଭିକାରୀ କଥା ହୁଏତ କେବେଠୁ ପାଶୋରି ଦେଲେଣି ।

ଜଣ ଜଣ କରି ସମସ୍ତେ ଏଇ ଭିକାରୀକୁ ନିଶୁଣୀ ସଜେଇ ସଫଳତାର ସ୍ବର୍ଣ୍ଣିମ ଶିଖରରେ ଅଧିଷ୍ଠିତ ହୋଇ ପ୍ରାଚୁର୍ଯ୍ୟର ବ୍ୟାମୋହ ଭିତରେ ବୁଡ଼ି ରହିଲେ । କେହି ଥରେ ବି ପଛକୁ ଫେରି ଚାହିଁଲେନି । ସେମାନେ ସମସ୍ତେ ଅଗ୍ରଗାମୀ । ପ୍ରଗତି ପଥରେ ବେଗଶୀଳ । ପଛକୁ ଚାହିଁବାକୁ ସମୟ କାହିଁ ? ଅତୀତକୁ ମନେପକାଇ ଲାଭ ବା କ'ଣ ? ସେମାନେ ବର୍ତ୍ତମାନ ସର୍ବସ୍ବ । ଭବିଷ୍ୟତର ରଙ୍ଗୀନ ସ୍ବପ୍ନରେ ବିଭୋର । ଅତୀତର ନଗ୍ନ ସତ୍ୟକୁ ଏଡ଼େଇ ଯିବା ବୁଦ୍ଧିମାନର କାମ ।

ଏବେବି ମଡ଼ିଆ ଭିକାରୀଟି ପଡ଼ି ରହିଛି ସେଇ ଥୁଣ୍ଟା ଗଛମୁଳେ । ପେଟ ଲାଗିଛି ପିଠିରେ । ତାରି ଭଳି କେତେ ପଡ଼ିଛନ୍ତି ଭାରତର ଗଳିକନ୍ଦିରେ । କିଏ ସେମାନଙ୍କର ହିସାବ ରଖୁଛି ? ଏଇତ ଆମ ଭାରତୀୟ ସଭ୍ୟତା ଓ ସମୃଦ୍ଧିର ମାପକାଠି ? ବାପୁଜୀଙ୍କ ଶ୍ରେଣୀ ବିହୀନ ରାମରାଜ୍ୟର ସ୍ବପ୍ନେଳି ପରିକଳ୍ପନା ? ଆମ ସ୍ବାଧୀନତାର ମୂଲ୍ୟବୋଧ ? ପ୍ରଗତିର ଭିତ୍ତିଭୂମି ? ଆମ

ଦେଶରେ ଅନେକ ବାର ଗଣ ଦୌଡ଼ ହେଲଣି, ମାତ୍ର ଦଉଡ଼ନ୍ତି କେଉଁମାନେ ? ଥନ୍ତଲ ପେଟୁଆ ନେତା, ମନ୍ତ୍ରୀ, ମିଲ ମାଲିକ, ଅଭିନେତା, ଅଭିନେତ୍ରୀ ନା କୋତର ଲଗା ଦୀନ ମଜୁରିଆ ଆଉ ଭିକାରୀମାନେ ? କେତେଦିନ ଆଉ ଗ୍ଲିଥିବ ଏମିତି ? ଦେଶର କୋଟି କୋଟି ଜନତାଙ୍କୁ ଭୁଲେଇ କିଛି ମୁଷ୍ଟି-ମେୟ ବ୍ୟକ୍ତି ରାଜନୀତିର ପଶାଖେଳରେ "କଚେ ମୁଅ ବାର" କରୁଥିବେ ? "ଗରିବୀ ହଟାଓ" ଧ୍ୱନି ଦେଇ ଗରିବଙ୍କୁ ହଟେଇ ଗ୍ଲିଥିବେ ଦୂରକୁ ଅନେକ ଦୂରକୁ ଯୋଉଠୁ ସେମାନଙ୍କର ଆଖି ପାଇବନି ନେତା ମନ୍ତ୍ରୀଙ୍କର ଆକାଶଛୁଆଁ ଅଟ୍ଟାଳିକାର ଶୀର୍ଷକୁ ? ସାଧାରଣ ଜନତାଙ୍କ ପାଇଁ ନେତା-ମନ୍ତ୍ରୀଙ୍କ ଆଖିରେ ନିଦ ନାହିଁ । ପାଟିକୁ ରୁଚୁନାହିଁ ମାଂସ-ପଲଉ । ପେଟରେ ଓଦା କନା ଦେଇ ଏଇ ଜନତା ପୁଣି ସେଇମାନଙ୍କୁ ଭୋଟ ଦେଇ କ୍ଷମତା ଗାଦିରେ ବସାଉଛି । ଯେହେତୁ ଅନ୍ୟ ବିକଳ୍ପ ନାହିଁ ଏ ଦେଶର ଗଣତନ୍ତ୍ରରେ । ତେବେ କ'ଣ ସ୍ୱାଧୀନ ଭାରତରେ ପେଟ ପିଠି ଅଲଗା ହେବ ନାହିଁ ? ଭାରତୀୟ ପେଟର ଜ୍ୱାଳା ପ୍ରଶମିତ ହେବନି ? ? ?

(ଏକ ପଡ଼ୋଶୀ ଗଳ୍ପର ଛାୟାରେ)



# ସରକାରୀ ଗାଈ

ସକାଳୁ ଉଠି ସନିଆଁ ବାରିପଟ ପିଣ୍ଡାରେ ଗୁମ୍‌ମାରି ବସିଯାଇଥାଏ । କେତେ କଥା ଭାବୁଥାଏ । ଭାବନାର ଥଳକୂଳ ପାଉ ନଥାଏ । କ'ଣ କରିବ କିଛି ଉପାୟ ଠିକ୍ କରି ପାରୁ ନଥାଏ । ତାକୁ ଚତୁର୍ଦ୍ଦିଗ ଅନ୍ଧାର ଦେଖା ଯାଉଥାଏ । ଘରେ ପାଞ୍ଚପ୍ରାଣୀ କୁଟୁମ୍ବ । ସେ, ତା ସ୍ତ୍ରୀ ଏବଂ ତିନୋଟି ପିଲା । ଝିଅ ଦିଇଟି, ପୁଅ ବକଟେ । ବିଗ୍ରିରି ନେଗା କେତେ ଦିଅଁ ଦେବତା ପୂଜି, ମାନସିକ କରି ଶେଷରେ ଝିଙ୍କେଶ୍ୱର ମହାଦେବଙ୍କ ପାଖରେ ଅଧିଆ ପଡ଼ିଥିଲା । ପୁଅଟେ ହେଲା ଯେ ଜନ୍ମରୁ ରୋଗିଣା । କେମିତି ଘର ଚଳାଇବ ? ସବୁରି ତୁଣ୍ଡରେ ଆହାର ଗଣ୍ଡେ ଦେବ ? ଏଇ ଚିନ୍ତା ତା ଅନ୍ତରକୁ କୋରି ଖାଉଛି । ଜମିବାଡ଼ିତ ଶୂନ୍ । ଯାହାବି ପାଞ୍ଚ, ଦଶଗୁଣ୍ଠ ଥିଲା ତାକୁ ବନ୍ଧା ପକାଇ ବାପର ବେମାରୀ ଭଲ କରିବାରେ ଖର୍ଚ୍ଚ କଲା । ବେମାରୀତ ଭଲ ହେଲା ନାହିଁ, ବୁଢ଼ାଟାକୁ ନେଇ ଗ୍ଲିଗଲା । ଜମି ସେତକ ବି ଗଲା ତାର ଶୁଦ୍ଧି କ୍ରିୟାରେ । ସମ୍ବଳ ବୋଇଲେ ଘରଡ଼ିହ ଖଣ୍ଡିକ । ପାଠତ ବେଶୀ ପଢ଼ି ପାରିଲାନି । ଯେତିକି ପଢ଼ିଥିଲା ସେଥିରେ ଗ୍ରକିରୀ ମିଳନ୍ତା କୁଆଡ଼ୁ ? କାମଧନ୍ଦା ବି ସେମିତି ମିଳୁନି । ନା-ଆଉ ସେ ଭାବି ପାରୁନି । ଯାହା ହେବାର ଥିବ ହେବ । ଯିଏ ଜନମ ଦେଇଛି, ଦୁନିଆଁ ଦେଖୁଛି, ସେଇ ବୁଝିଲେ ବୁଝିବ ନହେଲେ ନାହିଁ । ରଖିଲେ ରଖିବ ମାରିଲେ ମାରିବ ।

ନେଗା ଦାଣ୍ଡ ଓଳଉ ଓଳଉ କହିଲା, "ସେଇଠି ସେମିତି ବସିଛ କାହିଁକି ? ପଧାନ ଘରକୁ ଗଲନି ? ସାନବାବୁଙ୍କୁ କହି କିଛି ଆଣିଥାନ୍ତ । କାଲିଠୁ ତ ଘରେ କିଛି ନାହିଁ । ପୁଅଟାକୁ ଜ୍ୱର । ତା ତୁଣ୍ଡରେ ଦେବାକୁ ଶାଗୁ, ବାଲି କିଛି ବୋଲି ନାହିଁ ।"

ଏଇ ସମୟରେ ଦାନ୍ତ ଘଷୁଘଷୁ ମଙ୍ଗୁଳି ଆସି ପହଞ୍ଚିଲା । କହିଲା, "ସନାଇ ! ଏଥର ତୋ ଦୁଃଖ ଗଲା ବୋଲି ଜାଣ । ସରକାର ଆମ ଗରିବ-ମାନଙ୍କ ପାଇଁ କେତେ ନୂଆ ଯୋଜନା କରିଛନ୍ତି । କାଲି ସରପଞ୍ଚ ବାବୁ

କହୁଥିଲେ, ସରକାର ଯାହାର ଘର ନାହିଁ ଘର ତୋଳି ଦେବେ । ଜମି ନଥିଲେ ଜମି ଦେବେ । ସାର, ବିହନ ଦେବେ । ବ୍ୟବସାୟ କରିବା ପାଇଁ ମେଣ୍ଢା, ଛେଳି, ଘୁଷୁରି, ଗାଇ କିଣି ଦେବେ ।

ମୁଁ ଭାବୁଛି ଛେଳି ଆଣିବି । ବେଶ ଲାଭ ହେବ । ମାଂସ ଦରତ ହୁ ହୁ ବଢ଼ିଗଲିଛି । ତୁ ଗୋଟାଏ ଜର୍ସିଗାଇ ଆଣ । ଦୁଧ ବିକି ଆରାମରେ ଚଳିଯିବୁ । ତୋ ପିଲାଙ୍କ ପାଟିରେ ବି ବାଜିବ । ତୁ ଉଠିଲୁ, ଶୀଘ୍ର ଯିବା ସରପଞ୍ଚଙ୍କ ପାଖକୁ ।

ନେଗା କହିଲା, "ଆଉ ବସିଲ କାହିଁକି ? ମଙ୍ଗୁଳି ସାଙ୍ଗରେ ଯାଉନ । ମୁଁ ମହାପାତ୍ର ଘରେ ପାଇଟି କରି ପିଲାଙ୍କ ପାଇଁ କିଛି ଆଣିବି । ତମେତ ଆଉ କଷ୍ଟକାମ କିଛି କରି ପାରିବନି । ମଙ୍ଗୁଳି ଠିକ୍ ବୁଦ୍ଧି ଦେଇଛି । ଗାଇଟେ ଆଣିଲେ ଭଲ ହେବ । ଆମର ଦୁଃଖ ଯିବ ।"

ସନିଆଁ ମଙ୍ଗୁଳି ସାଥିରେ ଯାଇ ସରପଞ୍ଚଙ୍କ ଘର ପାଖରେ ପହଞ୍ଚିଲା । ସରପଞ୍ଚ ବାବୁ ଗାଧୁଆ ପାଧୁଆ ସାରି ପୂଜାପାଠରେ ବସିଥିଲେ । ତାଙ୍କର ଆଗକୁହା ଡାହାଣ ହାତିଆ ଚେଲା ଓରଫ ଓ୍ୱାର୍ଡ଼ମେମ୍ବର ବାବୁ ବିକଳାନନ୍ଦ ବାଡ଼ିଖଣ୍ଡେ ଧରି ବାରଣ୍ଡାରେ ଟହଲ ମାରୁଥିଲେ । ସନିଆଁ ମଙ୍ଗୁଳିଙ୍କୁ ଦେଖି ପକେଇ କହିଲେ, "କିରେ, ସକାଳୁ ସକାଳୁ ତମେ ଦିଟାଯାକ ଏଠି ? କଥା କ'ଣ ?"

ମଙ୍ଗୁଳି କହିଲା, "ତମ ଘରକୁ ଯାଇଥିଲୁ । ଶୁଣିଲୁ ତମେ ଏଇଠି । ତେଣୁ ଗ୍ଲଲି ଆସିଲୁ । ଯାହା ହେଉ ଆମ ଦୁଃଖ ବୁଝିବ । ସରପଞ୍ଚଙ୍କୁ ଆମ କଥା କହି ଆମ କାମ କରେଇବ । ତମରି ଉପରେ ଭରସା କରି ଆମେ ଆସିଛୁ । ତମ ବିନା ଆମର ଆଉ କିଏ ଅଛି ନିଜ ଲୋକ ?"

ମନଘେନା କଥା ପଦେ ଶୁଣିଲେ ବିକଳି ବାବୁ ସଙ୍ଗେ ସଙ୍ଗେ ତରଳି ଯାଆନ୍ତି । ନିଶକୁ ସାଉଁଳେଇ ଗଳା ଖଙ୍କାରି କହିଲେ, "ତମେ ଦି'ଟାଯାକ ଭାରି କପାଳିଆ । ଆଜି କାହା ମୁହଁ ଗ୍ଲହିଁଥିଲ କେଜାଣି ଏକା ସାଙ୍ଗରେ ମୋର ଏବଂ ଭଉନାଙ୍କର (ସରପଞ୍ଚ) ଦର୍ଶନ ପାଇଗଲ । ଏଭଳି ସୁବର୍ଣ୍ଣ ସୁଯୋଗ ଅନ୍ୟ କାହା ଭାଗ୍ୟରେ ଜୁଟେନା । ତମେମାନେ ତ ଜାଣିନ ଭଉନା ମୋତେ ନ ପଗ୍ଲରି କିଛି କାମ କରନ୍ତିନି । ମୁଁ ଯାହା କହିବି ସେୟା । ମୋତେ ନପଗ୍ଲରି ପଗ ସରକାରୀ କାଗଜ ପତ୍ରରେ ଦସ୍ତଖତ କରନ୍ତିନି । ଆଉ ଟିକିଏ ଡେରି ହୋଇଥିଲେ ଆମ ଦେଖାପାଇ ନଥାନ୍ତ । ଆଜି ପଗ ବ୍ଳକରେ ମିଟିଂ ଅଛି ।

ଆମେ ନଗଲେ ତେଣେ ବି: ଡ଼ି: ଓଙ୍କ ବୁଦ୍ଧି ହଜିଯିବ । ହଉ, ଆସିନ୍ତ ଯେତେ ବେଳେ କୁହ, ତମ ପାଇଁ କ'ଣ କରିବାକୁ ହେବ । ତମର ଭଲମନ୍ଦ ନବୁଝିଲେ ମୋତେ ବି ଭଲ ଲାଗିବନି । ଯେତେହେଲେ ତମେ ମୋର ନିଜ ଲୋକ । ପୁଣି ଏକା ସାଇଭାଇ ।

ମଙ୍ଗୁଳି କହିଲା, "ଦେଖିଲୁ ସନାଇ ? ମୁଁ ତୋତେ କହୁ ନଥିଲି ? ସରପଞ୍ଚ ବାବୁ ଖାଲି ନାଆଁକୁ ମାତ୍ର । ଆମ ବିକଳି ଭାଇଙ୍କୁ ନ ଧରିଲେ କିଛି ହେବନି । ବି ଡ଼ି. ଓ, କଲେକ୍ଟର, ମନ୍ତ୍ରୀ ସମସ୍ତେ ଯାଙ୍କ ହାତ ମୁଠାରେ ।"

"ତମେତ ସବୁକଥା ଜାଣିନ୍ତ । ଅଧିକ କ'ଣ ବୁଝେଇବି ? ସନାଇ'ର ବାଆ ମଲାଠୁ ସେ ନିରାଶ ହୋଇ ପଡ଼ିଛି । ଘରେ ପାଞ୍ଚପ୍ରାଣୀ କୁଟୁମ୍ବ । ଜମି ଜମାତ ନାହିଁ । ଖାଲି ଯାହା ଡିହଖଣ୍ଡକ, ଭଙ୍ଗା ଦଦରା ଘରଟିଏ । ମୁଁ କହୁଥିଲି ଯେ ତା ପାଇଁ ଗୋଟେ ଭଲ ଜର୍ସିଗାଈ କରେଇ ଦିଅ, ମୋ ପାଇଁ ଛେଳିରଣଟା ମଞ୍ଜୁର କରିଦିଅ ।"

ସନିଆଁ କହିଲା, "ତମେ ଆମର ନେତା, ଭାଇ ବନ୍ଧୁ, ସବୁକିଛି । ତମେ ମାରିଲେ ମାରିବ ରଖିଲେ ରଖିବ । ମୋ ପିଲାଙ୍କ କଥା ତମକୁ ଲାଗିଲା ।"

ବିକଳି ବାବୁ କହିଲେ "ବୁଝିଲୁ ମଙ୍ଗୁଳି ମୁଁ କାହାରି ଦୁଃଖ ଦେଖି ପାରେନି । ତମେ ଦି'ଜଣ ପୁଣି ମୋର ଅତି ନିଜର ତଥା ସାଇଭାଇ । ତମ କଥା ନବୁଝିବି ତ ଆଉ କାହା କଥା ବୁଝିବି ?"

"କାହା କଥା ବୁଝୁଛୁ କିରେ ବିକଳି ? ସରପଞ୍ଚ ବାବୁ ପୂଜାସାରି ପଦାକୁ ବାହାରିଲେ ଚିତାଚଇତନ ଶୋଭିତ ହୋଇ ଧୋତିର କଚ୍ଛ ମାରୁ ମାରୁ ତାଙ୍କୁ ଦେଖି ମଙ୍ଗୁଳି ଏବଂ ସନିଆଁ ଲମ୍ବତମ୍ବ ହୋଇ ମୁଣ୍ଡିଆ ମାରି ପାଦଧୂଳି ନେଇ ମୁଣ୍ଡରେ ଲଗାଇଲେ ।

"ମଙ୍ଗୁଳି ଆଉ ସନିଆଁ ଛେଳି, ଗାଈ ଋଣ ନେବାକୁ ଚାହୁଁଛନ୍ତି । ବିକଳିବାବୁ ଏତକ କହୁକହୁ ସରପଞ୍ଚ ବାବୁ କହିଲେ "କିରେ ମନା କରୁଛି କିଏ ? ସରକାର ପରା ଏଇମାନଙ୍କ ପାଇଁ ସବୁ ଯୋଜନା କରୁଛନ୍ତି ? ଆଜି ବ୍ଲକରୁ ଏମାନଙ୍କ ପାଇଁ ଫର୍ମ ନେଇ ଆସିବା । ତା'ପରେ ଯାହା କରିବାର କରିବାନି ? ଡେରି ହେଉଛି, ତେଣେ ମିଟିଂ ଆରମ୍ଭ ହୋଇଯାଇପାରେ ।

"ତମେ ଦିହେଁ ଯାଅ । କାଲି ସଞ୍ଜରେ ଆମ ଘରକୁ ଆସିବ । ଫର୍ମ ପୂରଣ କରିଦେବା । ଭାଇନାତ ଗଳି । ଆଉ ଚିନ୍ତା କ'ଣ ?" ବିକଳିଙ୍କ କଥା

ଶୁଣି ଆନନ୍ଦରେ ଗଦ୍‌ଗଦ୍‌ ହୋଇ ସନିଆଁ ଓ ମଙ୍ଗୁଳି ଆଉଥରେ ମୁଣ୍ଡିଆ ମାରିଲେ ।

ପରଦିନ ସନ୍ଧ୍ୟାରେ ଦୁହେଁ ଯାଇ ହାଜର ହେଲେ ବିକଳିବାବୁଙ୍କ ଘରେ । ବିକଳିବାବୁ ସେମାନଙ୍କୁ ଦେଖି ପାନଖିଆ ଦାନ୍ତ ନେଫିଡ଼ି କହିଲେ "ତମେ ସବୁ ଠିକ୍‌ ଋଣ ନେବ ନା ପରେ ପୁଣି ହଇରଣ କରିବ ?"

"ଋଣ ନେବୁ ନାହିଁତ ତୁଛାଟାରେ ଆମେ ଧାଇଁଛୁ । ମଙ୍ଗୁଳିର ଏ ପଦକ ଶୁଣି ବିକଳିବାବୁ କହିଲେ, "ବେଶ୍‌ । ଭଲକଥା । ତମ ଋଣ ମଞ୍ଜୁର ହୋଇଗଲା ବୋଲି ଜାଣ । ଆମେ ବି.ଡ଼ି.ଓଙ୍କ ସହିତ କଥା ହୋଇ ସାରିଛୁ । ଫର୍ମ ବି ପୂରଣ କରି ସାରିଛି । ଏଇ ନିଅ ଦିହେଁ ଦିଟା ଟିପ ଚଡ଼େଇ ଦିଅ ।"

ମଙ୍ଗୁଳି ଏବଂ ସନିଆଁ କୃତ୍ୟାକୃତ୍ୟ ହୋଇ ବିକଳିବାବୁଙ୍କ କହିବାନୁସାରେ ନିର୍ଦ୍ଦିଷ୍ଟ ସ୍ଥାନରେ ଟିପ ଚଡ଼େଇ ଦେଲେ । ବିକଳିବାବୁ ଫର୍ମ ଦୁଇଟି ସାଇତି ରଖି କହିଲେ, "ସବୁ ହେଲା ଯେ, କିନ୍ତୁ...... ।" ମଙ୍ଗୁଳି ଆଶ୍ଚର୍ଯ୍ୟ ହୋଇ ପଚାରିଲା "କ'ଣ ହେଲା ? କୋଉଠି କିଛି ଭୁଲ ରହିଗଲାକି ?

"ମୋ କାମରେ ପୁଣି ଭୁଲ ରହିବ ? ସେକଥା ନୁହଁ ଯେ, ତେବେ ତମେତ ଜାଣିଛ ଆଜିକାଲି ଯୁଗର କଥା ? ହାତଗୁଞ୍ଜା ନଦେଲେ ତଳୁ ଉପର ଯାଏ କୋଉଠି କିଛି କାମ ହେଉନି ? ମୋ କଥା ଛାଡ଼ । ମୁଁ ତମର ନିଜ ଲୋକ । ନହେଲେ କ'ଣ ଆଉ କାହା ପାଇଁ କୋଡ଼ିଏ ତିରିଶ ଖର୍ଚ୍ଚ କରି ଫର୍ମ ଆଣିଥାନ୍ତି ? କିରାଣୀ କାଗଜପତ୍ର କାମ କରିବ' ହାତ ପତେଇବ । ବଡ଼ବାବୁ ଫାଇଲ ପେଶ୍‌ କରିବେ, ସେ କିଛି ନେବେ । ପଶୁଡ଼ାକ୍ତର ସାର୍ଟିଫିକେଟ ଦେବେ, ସେ ବି କ'ଣ ଖାଲିରେ ? ତା ଛଡ଼ା ପିଅନ, ଚପରାଶିଙ୍କ ଠାରୁ ଆରମ୍ଭ କରି ବି. ଡ଼ି. ଓ, କଲେକ୍‌ଟରଙ୍କ ଯାଏ ସମସ୍ତେ ଅଛନ୍ତି । ମୁଁ ଜାଣିଛି ତମ ଦିହିଁଙ୍କର ଋଣ ହୋଇଗଲା ପରେ ତୁ ମାଂସ ଖୋଇବୁ ଆଉ ସେ ଖାଣ୍ଟି ଦୁଧ ପେଇବ । ମଝିରେ ମଝିରେ ଭଉନାଙ୍କ ଘରକୁ ମଧ୍ୟ ପଠାଇବ । କିନ୍ତୁ ସେମାନଙ୍କ କଥା ବୁଝି ନଦେଲେ...... ।"

ବିକଳି ବାବୁଙ୍କ କଥା ଶୁଣି ସନା ଆକାଶରୁ ଖସି ପଡ଼ିଲା । ମଙ୍ଗୁଳି ସାହସ କରି ପଚାରିଲା "ଆଜ୍ଞା । ସରକାର ପରା ଗାଈ, ମେଣ୍ଢା, ଛେଳି, ଘୁଷୁରି ସବୁ ଦେଉଛନ୍ତି ? ସେମାନଙ୍କ ଉଲମନ୍ଦ ବୁଝିବା ପାଇଁ ଖର୍ଚ୍ଚ, ଦାନା କିଣିବା ପାଇଁ ଟଙ୍କା ଦେଉଛନ୍ତି । ପୁଣି ଗରିବଙ୍କ ପାଇଁ କେତେ ଟଙ୍କା ଛାଡ଼ କରୁଛନ୍ତି ।"

ସନିଆଁ କହିଲ ମୋର ଆଜ୍ଞା ଋଣ ଦରକାର ନାହିଁ । ଘରେ ପିଲାମାଇପ ଉପାସରେ । ପୁଅଟାକୁ ବେମାର । ମୋ ପାଖରେ ତ ଫଟା ପାହୁଲଟେ ବି ନାହିଁ । ଆଗତୁରା ବଟି ଦେବି କୋଉଠୁ ?

ବିକଳି ବାବୁ ଦେଖିଲେ ସୁଯୋଗ ହାତଛଡ଼ା ହୋଇ ଯାଉଛି । କଅଁଳେଇ କରି କହିଲେ, "ବୁଝିଲୁ ସନା, ମୁଁ କ'ଣ ତୋ ଘର କଥା ଜାଣିନି ନା ମଙ୍ଗୁଳି କଥା ଜାଣିନି ? ତମେ ସବୁ ପରା ମୋ ନିଜ ଲୋକ ? ଆଛା ଠିକ୍ ଅଛି । ଋଣ ମିଳିବା ପରେ ମନ ଖୁସିରେ ଯାହା ଦେବାର ଦେବ । ମୁଁ ତମ ପାଇଁ ସମସ୍ତଙ୍କ କଥା ବୁଝି ଦେଇଥିବି । ତମେ ଦିହେଁ ମନ ଦୁଃଖ କରିବନି । ଯେମିତି ହେଉ ମୁଁ ଋଣ ମଞ୍ଜୁର କରାଇବି ।

ମଙ୍ଗୁଳି, ସନିଆଁ ମୁଣ୍ଡିଆ ମାରି ଫେରିଲେ । ବିକଳି ବାବୁ ଯେ ଦୟାର ସାଗର ଏକଥା ସେମାନଙ୍କ ମନରେ ଦୃଢ଼ୀଭୂତ ହେଲା । କିଛିଦିନ ପରେ ମଙ୍ଗୁଳିକୁ ୨୦ଟି ମାଈ ଛେଳି, ସନିଆଁକୁ ଗୋଟାଏ ଜର୍ସି ଗାଈ ମିଳିଲା । ସେମାନଙ୍କ ଆନନ୍ଦ କହିଲେ ନସରେ । ତେଣେ ବାବୁ ବିକଳାନନ୍ଦ ଏବଂ ସରପଞ୍ଚ ଏମାନଙ୍କୁ ମିଳିଥିବା ସବୁ ସବ୍‌ସିଡ଼ ଟଙ୍କାକୁ ଅଧେ ଅଧେ କରି ସ୍ୱାହା କରିଦେଲେ । ମଦମାଂସର ସୁଅ ଛୁଟିଲା । ସନିଆ, ମଙ୍ଗୁଳି ବା ଏକଥାର ଟେର୍ ପାଆନ୍ତେ କିପରି ?

ସମୟ ଗଡ଼ି ଚାଲିଲା । ମଙ୍ଗୁଳିର ଛେଳିମାନେ ଗୋଟାକ ପରେ ଗୋଟାଏ ଛୁଆ ପ୍ରସବ କଲେ । ସନିଆର ଗାଈ କିନ୍ତୁ ଏଯାଏ ଗର୍ଭିଣୀ ହେବାର ନାଁ ଗନ୍ଧ ନାହିଁ । ନିୟମିତ ଗାଈର ଯତ୍ନ ନେବାରେ ହେଳା କରିନାହିଁ ସେ ।

ଦାନା ଖୁଆଇଛି, ସରକାରୀ ଷଣ୍ଢ ପାଖକୁ ନେଇଛି । ପଶୁଡାକ୍ତର ବି ଇଞ୍ଜେକ୍‌ସନ ଦେଇଛନ୍ତି । ଅଥଚ........ । ଗାଈଟି ବେଶ ତଉଲ ଡାଉଲ । ରଙ୍ଗ କସରା । ଦେହରୁ ତେଲ ନିଗିଡ଼ି ପଡ଼ିବ । କପାଳରେ ଗ୍ରେଟିଆ ଧଳା ଗୋଲାକାର ଦାଗରେ ଖୁବ୍ ସୁନ୍ଦର ମାନେ । ନେଟା ତାକୁ ଆଦରରେ ଟିକିଲି ବୋଲି ଡ଼ାକେ । ସେବାଯତ୍ନ କରେ । ବଉଁଶ ଯାକ ଟିକିଲି ପଛରେ ଲାଗିଥାନ୍ତି । ସନିଆଁ କଅଁଳ ଛନଛନିଆଁ ଘାସ କାଟି ଆଣିଦିଏ । ନେଟା କୁଣ୍ଡା, ପେଜ, ତୋରାଣୀ ଖୁଆଏ । ମନେ ମନେ ଭାବେ, ଯାହା ହେଉ ଭଗବାନ ଡାକ ଶୁଣିଛନ୍ତି । ସରକାର ଦୟା କରିଛନ୍ତି । ଏଣିକି ତାଙ୍କର ଦୁଃଖ ଯିବ । ହେଲେ ସବୁ ଆଶା ପାଣି ଫାଟିଯାଏ । ମଙ୍ଗୁଳିର ଛେଳି ସଂଖ୍ୟା ବଢ଼ି ବଢ଼ି ଚାଲନ୍ତି । ଏକେଡେଥର ଦୁଇ ଖାସି କାଟି ଗାଁରେ ମାଂସ ବିକ୍ରି କଲାଣି । ବିକଳି ଓ ସରପଞ୍ଚ

ବାବୁଙ୍କୁ ମଦ୍ଧ-ମାଂସ ଖୁଆଇ ସାରିଲଣି । ମାତ୍ର ସନିଆଁର ଗାଈ ଏଯାଏ ଫଳ ଧରିବାକୁ ନାହିଁ ।

ମନ ଦୁଃଖରେ ଦି'ପ୍ରାଣୀ ଭଗ୍ୟକୁ ନିନ୍ଦୁଥାନ୍ତି । ଅଗ୍ରନକ ଦିନେ ସରକାରୀ ବାବୁମାନେ ଋଣ କିସ୍ତି ଆଦାୟ କରିବାକୁ ପହଞ୍ଚିଗଲେ । ସନିଆଁ ନେହୁର ହୋଇ ସବୁକଥା କହିଲା । ତା କଥା ଶୁଣୁଛି କିଏ ? ତା ଦୁଃଖ ବୁଝୁଛି କିଏ ? ବାବୁମାନେ ଧମକ ଦେଇଗଲେ । ପନ୍ଦର ଦିନ ମଧ୍ୟରେ ଟଙ୍କା ଦାଖଲ ନକଲେ ତା ଘରଡ଼ିହ ନିଲମ ହୋଇଯିବ ।

ସରପଞ୍ଚ ଉପାୟ ନପାଇ ଗ୍ରନିଆଁ ହୋଇ ସରପଞ୍ଚଙ୍କ ଘରକୁ ଦଉଡ଼ିଲା । ସେତେବେଳେ ସରପଞ୍ଚ ଏବଂ ବିଜଳି ବାବୁ ଘର ଭିତରେ ବସି କଥା ହେଉଥାନ୍ତି । ବାହାରୁ କବାଟ୍ ବନ୍ଦ୍ ଥାଏ । ସନିଆଁ କାନ ପାରିଲା । ବିଜଳି ବାବୁ କହୁଥାନ୍ତି, "ବୁଝିଲ ଭଇନା ! ଗୋଟିଏ ଗାଈତ ସନିଆଁକୁ ଦେଇ ପାରତାର କରିଦେଲେ । ଆଉ ଗୋଟିଏ ବାଂଝୀ ଗାଈ ଓଭରସିଅର ବାବୁଙ୍କର ଅଛି । ତାକୁ ପାରି କରେଇ ଦେଲେ ଆଉ ପାଞ୍ଚ ହଜାର ହାତକୁ ଆସିବ । ମୁଁ ଦନେଇ ଜେନାକୁ ଠିକ୍ କରିଛି । ସେଇଟା ବି ସନିଆଁ ଭଳି ନିପଟ ମୂର୍ଖ, ବୋକାଟାଏ ।

ସରପଞ୍ଚ ବାବୁ ହିସାବ କଲେ । ଦେଖ୍, ଏଥିରେ ମୋର ଭଗ ଘରି-ହଜାର ଆଉ ତୋର ହଜାରେ । କାରଣ ଗତ ଥରକ ତୁ ସବସିଡ଼ ଟଙ୍କାରୁ ଦି'ହଜାର ଅଧିକ ନେଇଥିଲୁ । ସନିଆଁ ସବୁ ବୁଝି ପାରିଲା । ବିଜଳି ଏବଂ ସରପଞ୍ଚ ବାବୁ କିପରି ବ୍ଳକ ବାବୁ ମାନଙ୍କର ବାଂଝୀ ଗାଈକୁ ଋଣ ଯୋଜନା ମାଧ୍ୟମରେ ପାରତାର କରି ବେଶ ହାତ ଚିକ୍‌କଣ କରୁଛନ୍ତି । ସବୁକଥା ଆସି ମଙ୍ଗୁଳିକୁ କହିଲା । କିନ୍ତୁ ଉପାୟ କାହିଁ ? କରିବେ କ'ଣ ?

ମଙ୍ଗୁଳି କହିଲା ଆସନ୍ତା ସପ୍ତାହରେ ଆମ ଗାଁକୁ ମନ୍ତ୍ରୀ ଆସିବେ । ତାଙ୍କୁ ସବୁ ଦୁଃଖ ଜଣାଇବା । ଆଶ୍ୱସ୍ତ ହେଲା ସନିଆଁ ।

ନିର୍ଦ୍ଦିଷ୍ଟ ଦିନ ମନ୍ତ୍ରୀ ଆସିଲେ । ବିରାଟ ସଭା ହେଲା । ମଙ୍ଗୁଳି ଏବଂ ସନିଆଁ "ଟିକିଲି"କୁ ନେଇ ସଭାସ୍ଥଳରେ ପହଞ୍ଚିଗଲେ । ସମସ୍ତେ ଆଶ୍ଚର୍ଯ୍ୟ । ଘଟଣା କ'ଣ ? ମନ୍ତ୍ରୀଙ୍କ ସହିତ ଏ ଗାଈର ସମ୍ପର୍କ କ'ଣ ? ମନ୍ତ୍ରୀ ଯେମିତି ଗାଡ଼ିରୁ ଓହ୍ଲାଇଛନ୍ତି ସନିଆଁ ଗୋଡ଼ତଳେ ପଡ଼ିଗଲା । କହିଲା "ହଜୁର ! ଆପଣଙ୍କ ଗାଈ ଫେରେଇ ନିଅନ୍ତୁ । ମୋ ଋଣ ଛାଡ଼ କରିଦିଅନ୍ତୁ । ମନ୍ତ୍ରୀ ସରପଞ୍ଚଙ୍କୁ ପ୍ରଶ୍ନିଳ ଦୃଷ୍ଟିରେ ଗ୍ରହିଁଲେ । ବିଜଳିବାବୁ ଦାନ୍ତ ନିକୁଟି, କାନମୂଳ

ଅଣ୍ଡାଳି କହିଲେ "ଆଜ୍ଞା ! ସେଇଟା ହତଭଗାଟାଏ । ହାନକପାଳିଆଟେ । ଯୋଉ ଡାଳ ଧରୁଛି ତାହା ଭାଙ୍ଗି ଯାଉଛି । ସରକାର ଏତେ ଗାଈ ଋଣ ଦେଲେ କାହାରି କିଛି ହେଲାନି । ତା ଗାଈଟି ବାଂଝି ପାଲଟି ଗଲା ।"

ସାମ୍ବାଦିକମାନେ ଅଡ଼ିବସିଲେ "ସରକାରୀ ଗାଈ ବାଂଝ ହେଲା କିପରି ? ସ୍ଥାନୀୟ ପଶୁ ଡାକ୍ତର ଏ ଗାଈକୁ ସୁପାରିଶ କଲେ କେମିତି ? ମନ୍ତ୍ରୀ ସବୁ ତଦନ୍ତ କରାଯିବ ବୋଲି ପ୍ରତିଶ୍ରୁତି ଦେଲେ । ସଭା ସାରି ମନ୍ତ୍ରୀ ଚାଲିଗଲେ । ସନିଆଁ, ବିକଳିବାବୁ ଓ ସରପଞ୍ଚଙ୍କୁ କେତେ ନେହୁରା ହେଲା । ଫଳ କିଛି ହେଲାନି । ସେମାନେ କହିଲେ ଦେଖ, ତୋ ଭାଗ୍ୟ ଖରାପ, କପାଳ ମନ୍ଦ । ଆମେ ଆଉ କ'ଣ କରିବୁ ? ସନିଆଁ କିଛି କାହାକୁ କହି ପାରିଲାନି । ତା କଥାକୁ ବିଶ୍ୱାସ କରିବ କିଏ ??



# ଆନ୍ଦୋଳନଜୀବୀ

ସେଦିନ ଟ୍ରେନରେ ଭୁବନେଶ୍ୱର ଯିବା ପାଇଁ ବାଲେଶ୍ୱର ଷ୍ଟେସନରେ ଅପେକ୍ଷା କରିଥାଏ । ଟ୍ରେନ୍ ଘଣ୍ଟାଏ ବିଳମ୍ବ ଥାଏ । ହ୍ୱିଲର ଷ୍ଟଲରୁ ସନ୍‌ଡ଼େ ମେଲ୍ ମ୍ୟାଗାଜିନ୍‌ଟିଏ କିଣି ୱେଟିଂ ରୁମରେ ବସି ପଢ଼ୁ ପଢ଼ୁ ସମୟ ଅତିକ୍ରାନ୍ତ ହୋଇଗଲା । ଫାଷ୍ଟ ବେଲ ବାଜିଲା । ପ୍ଲାଟଫର୍ମକୁ ଆସିଲି । ଦେଖିଲି ବିଶେଷ ଗହଳି ନଥାଏ । ଭାବିଲି ଯାହାହେଉ ଆଜି ଆରାମରେ ଟ୍ରେନ୍‌ଯାତ୍ରା କରିହେବ । କିନ୍ତୁ ; ଏ କଣ ? ଥାର୍ଡ଼ ବେଲ ହେଉ ହେଉ କୋଉଠି ଥିଲେ ଏତେ ଲୋକ ପଙ୍ଗପାଳ ଭଳି ମାଡ଼ି ଆସିଲେ । ପ୍ରମାଦ ଗଣିଲି । ନା ଆଜି ଆଉ ଟ୍ରେନ୍‌ରେ ଉଠିହେବ ନାହିଁ । ଟ୍ରେନ୍ ଆସି ପହଞ୍ଚିଲା ମାତ୍ରେ ସେମାନେ ଧସ୍ତାଧସ୍ତି ଆରମ୍ଭ କରିଦେଲେ । ଜଣେ ଟି. ଟି. ଇ ମୋତେ ଥ୍ରିଟାୟାର କୋଚରେ ଉଠାଇ ବସିବା ପାଇଁ ସୁବିଧା କରିଦେଲେ । କହିଲେ ଏଇ କୋଚ ଭୁବନେଶ୍ୱରରୁ ଫିଲପ୍ ହେବ । ଏଣୁ କିଛି ଅସୁବିଧା ହେବନି । ତଥାପି ମୁଁ ଦେଖିଲି ସେ କୋଚରେ ମଧ୍ୟ ଅନେକ ଲୋକ ବସିଥାନ୍ତି । ମୁଁ ଝରକା ପାଖ ଆଟାଚିଟିକୁ ଉପର ବର୍ଥରେ ରଖି ବସିଗଲି । ମୋ ପାଖରେ ଆଉ ଦୁଇ ତିନି ଜଣ ଆସି ବସିଲେ । ଟ୍ରେନ୍ ଗୁଡ଼ିଲା । କଥାବାର୍ତ୍ତା ଛଳରେ କିଏ କୋଉଠିକୁ ଯାଉଛନ୍ତି, କ'ଣ କରୁଛନ୍ତି ଆଦି ଆଲୋଚନା ହେଲା । ଜଣେ ବନ୍ଧୁ କହିଲେ ସେ "ଆଇନଜୀବୀ" ଜଣେ କହିଲେ ମୁଁ "ଶିକ୍ଷାବିତ୍" ଆଉ ଜଣେ କହିଲେ ମୁଁ "ଶିଳ୍ପପତି" ମୁଁ ମୋ କଥା କହିଲି ଯେ ମୁଁ ଜଣେ "ଚିକିତ୍ସକ" । ଶେଷରେ ବନ୍ଧୁ ଜଣକ କହିଲେ ସେ ଜଣେ "ଆନ୍ଦୋଳନଜୀବୀ" । ସମସ୍ତେ ତାଙ୍କ ଆଡ଼କୁ ଏକ ଲୟରେ ଚାହିଁ ରହିଲେ ।

ସାଧାରଣତଃ ଆମ ସମାଜରେ ଲୋକେ ବିଭିନ୍ନ ପ୍ରକାର ଜୀବିକା କରି ରୋଜଗାର କରନ୍ତି ଏବଂ ପରିବାର ପ୍ରତିପୋଷଣ କରନ୍ତି । କିଏ ଶ୍ରମଜୀବୀ ତ କିଏ କର୍ମଜୀବୀ, ଆଇନଜୀବୀ, ବୁଦ୍ଧିଜୀବୀ, କୃଷିଜୀବୀ, ଧର୍ମଜୀବୀ ଅବା କିଏ ଭିକ୍ଷୁକ ବା ଭିକ୍ଷାଜୀବୀ । ଯେଉଁମାନେ ଚାନ୍ଦା, ବତି ଆଦାୟ କରି ଚଳନ୍ତି

ସେମାନଙ୍କୁ ଶ୍ରମଜୀବୀ କୁହାଯାଇପାରେ । କିନ୍ତୁ "ଆନ୍ଦୋଳନଜୀବୀ" କହିଲେ ଏକଥା ବୁଝିବାକୁ ହେବ ଯେ ସେ ଆନ୍ଦୋଳନ କରି ଜୀବିକା ନିର୍ବାହ କରନ୍ତି ।

ଆମେ ସମସ୍ତେ ଉତ୍କଣ୍ଠିତ ହୋଇ ପଡ଼ିଲୁ ସେଇ ବନ୍ଧୁଙ୍କଠାରୁ ପ୍ରକୃତ ରହସ୍ୟ ଶୁଣିବା ପାଇଁ । ସେ ଯାହା କହିଲେ ତାର ସାରମର୍ମ ଆପଣମାନଙ୍କ ଆଗରେ ଉପସ୍ଥାପିତ କରୁଛି । ଏ ଯୁଗରେ ଆନ୍ଦୋଳନଜୀବୀ ସେ ଏକା ନୁହଁନ୍ତି ତାଙ୍କରି ଭଳି ଶହ ଶହ ହଜାର ହଜାର ଅଛନ୍ତି । ସେଦିନ ଟ୍ରେନ୍‌ରେ ଯେତେ ଲୋକ ଉଠିଲେ ସମସ୍ତେ ସେଇ ବନ୍ଧୁଙ୍କର ଅନୁଗତ ଆନ୍ଦୋଳନଜୀବୀ । ଭୁବନେଶ୍ୱରରେ ଏକ ରାଜନୈତିକ ଦଳ ପକ୍ଷରୁ ଆହ୍ୱାନ ଦିଆଯାଇଥିବା ଆନ୍ଦୋଳନରେ ଯୋଗ ଦେବାକୁ ସେମାନେ ଯାଉଥାନ୍ତି ।

ଜନହିତ ପାଇଁ, ସମାଜର ସୁସ୍ଥ ବିକାଶ, ଆଇନ ଶୃଙ୍ଖଳା ରକ୍ଷା, ତଥା ବିଭିନ୍ନ ଦାବୀ ପୂରଣ ପାଇଁ ଆନ୍ଦୋଳନ କରାଯାଏ । ଏହା ଏକ ଗଣତାନ୍ତ୍ରିକ ପରମ୍ପରା । ଅନେକ ସମୟରେ ଆନ୍ଦୋଳନକୁ ଜନସମର୍ଥନ ମିଳେ । ଫଳରେ ସରକାର ବା ଶିଳ୍ପସଂସ୍ଥାମାନେ କର୍ମଚାରୀଙ୍କ ଦାବୀ ପୂରଣ କରନ୍ତି । କିନ୍ତୁ ସତରେ କ'ଣ ଆନ୍ଦୋଳନକୁ ଜୀବିକା କରାଯାଇପାରେ ? ଏକଥା ହୁଏତ ଅଡ଼ୁଆ ଲାଗି ପାରେ । ମାତ୍ର ଏ ଯୁଗରେ ସବୁ ସମ୍ଭବ ହୋଇପାରେ । ଆନ୍ଦୋଳନର ପରଦା ପଛରେ ସ୍ୱାର୍ଥର ଉମ୍ମାନତାର ପାଦରେ ଘୁଙ୍ଗୁର ବାନ୍ଧି ନାଚେ । ଆମ ନେତା-ମାନେ ନିଜର ଦକ୍ଷତା, ଜନପ୍ରିୟତା ପ୍ରଦର୍ଶନ ପାଇଁ ଟ୍ରକ୍ ବସ୍‌ରେ ଲୋକ ବୁହାଇ ଆଣି ତଣ୍ଟି ଫଟାଇ ଭାଷଣ ଦିଅନ୍ତି । ଭଡ଼ାଟିଆ ଗୁଣ୍ଡା ଲଗାଇ ପ୍ରତିବାଦୀ ପକ୍ଷର କ୍ଷତି ସାଧନ କରନ୍ତି । ଏସବୁ ଆଜିକାଲିକା ରାଜନୀତିର ମୂଳମନ୍ତ୍ର ।

କଥାରେ ଅଛି "ଟାକାର କାଛେ ସକଲି ଆଛେ" । ସ୍ୱାର୍ଥରେ ବଶୀଭୂତ ଏ ଦୁନିଆଁ । ସ୍ୱାର୍ଥ ଯୋଉଠି ମନଯୋଗ ସେଇଠି । ଯେ କୌଣସି ଆନ୍ଦୋଳନ, ଅନଶନ ଏଭଳିକି ସ୍ଲୋଗାନ ଦେବା ପାଇଁ ଭଡ଼ାରେ ଲୋକ ମିଳନ୍ତି, ଏକଥା ନିରାଟ ସତ୍ୟ । ଏମାନଙ୍କୁ ଆନ୍ଦୋଳଜୀବୀ କୁହାଯାଏ । ଆନ୍ଦୋଳନ ହିଁ ଏମାନଙ୍କର ପ୍ରଧାନ ଜୀବିକା । ଅର୍ଥ ରୋଜଗାରର ଅସଲ ଧନ୍ଦା । ଏମାନଙ୍କର ସ୍ୱତନ୍ତ୍ର ସଙ୍ଗଠନ ଅଛି । ଏମାନେ କୌଣସି ନିର୍ଦ୍ଦିଷ୍ଟ ଦଳର ନୁହଁନ୍ତି । ବର୍ଷା ଯୁଆଡ଼େ ଛତା ସେଆଡ଼େ ଭଳି ଅର୍ଥ ଯେଉଁଠୁ ବେଶୀ ମିଳେ ଏମାନେ ସେଇଠିକୁ ଧାଡ଼ି ବାନ୍ଧନ୍ତି ।

ଯେତେ ବେକାର, ଗୁଣ୍ଡା, ଉଦ୍‌ବାସ୍ତୁ, ପହଲମାନ, ଡକାୟତ ଏଇ ସଂସ୍ଥାର ସଦସ୍ୟ । ଯଦି କୌଣସି ଦଳ ବା ସଙ୍ଗଠନ ପକ୍ଷରୁ ଆନ୍ଦୋଳନ

କରାଯିବାର ନିଷ୍ପତ୍ତି ନିଆଯାଏ ତେବେ ସଙ୍ଗେ ସଙ୍ଗେ ଆନ୍ଦୋଳନଜୀବୀ ସଂସ୍ଥାର ସଭାପତିଙ୍କୁ ଖୋଜା ପଡ଼େ । ସେ ଦରକଷା କଷି କରି ଉପଯୁକ୍ତ ପ୍ରାପ୍ୟ ଅଗ୍ରୀମ ନେଇ ନିଜର ଦଳବଳ ସହିତ ହାଜର ହୋଇ ଯାଆନ୍ତି ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସ୍ଥାନରେ । ସ୍ଲୋଗାନ ଦେବା, ଶୋଭାଯାତ୍ରାରେ ଯିବା, ଅନଶନରେ ବସିବା ଆଇନ ଅମାନ୍ୟ ଆନ୍ଦୋଳନ କରିବା ଆଦି ବିଭିନ୍ନ କାମ ପାଇଁ ଅଲଗା ଅଲଗା ଦର ରହିଛି । ଦରକାର ପଡ଼ିଲେ ବଜାରଦର ବଢ଼ାଇ ନେତାମାନେ ସେମାନଙ୍କୁ ନିଜ କାର୍ଯ୍ୟରେ ଲଗାଇଥାନ୍ତି ।

ବନ୍ଧୁ ଜଣକ ଏକ ଆନ୍ଦୋଳନଜୀବୀ ସଂସ୍ଥାର ସଭାପତି । ତାଙ୍କ ବୟାନ ଅନୁସାରେ ଆମେ ଜାଣିବାକୁ ପାଇଲୁ ଯେ ସ୍ଲୋଗାନ ଦେବା, ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା କରିବା ପାଇଁ ଖାଦ୍ୟ, ରହିବା ବ୍ୟବସ୍ଥା ସହିତ ଦିନକର ମଜୁରି ଦାବୀ କରାଯାଏ । ଅନଶନରେ ବସିଲେ ଦିନକୁ ଶହେରୁ ଦେଢ଼ଶହ, ଆମରଣ ଅନଶନ ପାଇଁ ଦିନକୁ ତିନିଶହ, ପୋଲିସର ଲାଠିମାଡ଼ ଖାଇବାକୁ ପିଠି ପତେଇଲେ ଆବଶ୍ୟକ ଚିକିତ୍ସା ବ୍ୟବସ୍ଥା ସହିତ ଜଣକା ଦିନକୁ ଶହେଟଙ୍କା ଦାବୀ କରାଯାଏ । ଆଇନ ଅମାନ୍ୟ ଆନ୍ଦୋଳନ, ଜାତୀୟ ସମ୍ପତ୍ତି ଭଙ୍ଗାରୁଜା ପାଇଁ ଅଧିକ ଅର୍ଥ ମିଳେ ।

ବର୍ଷକ ଯାକତ କୋଉଠିନା କୋଉଠି, ର୍‌ୟାଲି, ଆନ୍ଦୋଳନ, ଅନଶନ ଚାଲିଛି । ଏଣୁ ସେଇଥିରେ ସେମାନେ ବେଶ୍ ଚଳିଯାଇ ପାରୁଛନ୍ତି । ଧନ୍ୟରେ ଭାରତ ଦେଶ । ଏଠାରେ ଯେତେ ଧର୍ମ, ସେତେ ସଂପ୍ରଦାୟ । ଯେତେ ଜନତା ସେତେ ନେତା । ଯେତେ ଶ୍ରମଜୀବୀ, ଭିକ୍ଷାଜୀବୀ ତାଠାରୁ ଅଧିକ ଆନ୍ଦୋଳନଜୀବୀ । କାରଣ କଠିନ ପରିଶ୍ରମ ନକରି ମଧ୍ୟ ଏମାନେ ସ୍ୱଚ୍ଛଳ ଜୀବନଯାପନ କରିପାରନ୍ତି ।



# ରାଷ୍ଟ୍ରୀୟ ପରାଜିତ ପ୍ରତିନିଧି ସଭା

ଖୋକା ଭାଇଙ୍କ ଗୀତ "ଗୋରୀ କନିଆଁକୁ ସଭିଏ ଚାହାଁନ୍ତି, କାଳି କଥା କେହି ପଚାରେ ନାହିଁ" ଭଳି ନିର୍ବାଚନରେ ଯେଉଁମାନେ ବାଜିମାତ୍ କରି ଜିତି ଯାଆନ୍ତି ସେମାନଙ୍କର ଜୟ ଜୟକାର ଶୁଭେ । ବାଣ ଫୁଟେଇ, ସ୍ଲୋଗାନ ଦେଇ ନିଜର ସମର୍ଥକଙ୍କ ସହିତ ବିରାଟ ଶୋଭାଯାତ୍ରାର ଆୟୋଜନ କରନ୍ତି । ଖାସି କଟାଯାଏ, କୁକୁଡ଼ା ବେକ ମୋଡ଼ାଯାଏ, କେତେ ବୋତଲରୁ ଠିପି ଖୋଲାଯାଏ । ଯେଉଁମାନେ ହାରିଯାଆନ୍ତି ତାଙ୍କୁ କେହି ପଚାରନ୍ତି ନାହିଁ । ସେମାନଙ୍କର ତେବେ ଅପରାଧ କ'ଣ ? ଯେଉଁମାନେ ଛନ୍ଦକପଟ, କଳ-କୌଶଳ କରି ଜିତିଗଲେ ସେମାନେ କ'ଣ ଚିରକାଳ ଜିତୁଥିବେ ? ଏମିତି କିଛି ଗ୍ୟାରେଣ୍ଟି ଅଛି ? ନିର୍ବାଚନତ ସତ୍‌ରଞ୍ଜ ଖେଳ ପରି । କାଇଦା କରି ଗୁଟି ଗଡ଼େଇ ପାରିଲେ କଟେପ ବାର । ଖେଳରେ ହାରିବା ଜିତିବା ଯାହା, ନିର୍ବାଚନ କ୍ଷେତ୍ରରେ ମଧ୍ୟ ସେୟା । ଓ୍ୱାର୍ଡ଼ମେମ୍ବର ନିର୍ବାଚନ ହେଉ ବା ରାଷ୍ଟ୍ରପତି ନିର୍ବାଚନ ହେଉ, ସବୁଠି ସେଇ ଗୋଟିଏ ସୂତ୍ର । ତା ବୋଲି ବିଜୟୀ ନେତା ଫୁଲମାଳା ପକେଇ ରାମରାମ୍ ସମର୍ଥକଙ୍କ ଗହଣରେ ନିଶ ସାଉଁଳେଇ ଛାତି ଫୁଲେଇ ବୁଲିବେ ଆଉ ପରାଜିତ ପ୍ରାର୍ଥୀ ମାନେ କ'ଣ ଏତେ ହୀନିମାନିଆ ଯେ କୁଳଭୁଆସୁଣୀ ପରି ଗମ୍ଭିରୀ ଘରେ ଲୁଚିବେ ? ସେମାନଙ୍କର କ'ଣ ସମର୍ଥକ ନାହାଁନ୍ତି ? ସ୍ୱାଭିମାନ ନାହିଁ ? ସେମାନଙ୍କୁ ତ ପୁଣି ଭୋଟରମାନେ ଭୋଟ ଦେଇଛନ୍ତି । ହଁ ଆପଣମାନେ କହିପାରନ୍ତି ସେମାନେ ହାରୁଦଳ । କିନ୍ତୁ ଏକ ନମ୍ବର ସ୍ଥାନ ନ ପାଇଲେ ଦ୍ୱିତୀୟ, ତୃତୀୟ, ଚତୁର୍ଥ ସ୍ଥାନତ ଅଧିକାର କରିଛନ୍ତି ।

ଗଣତନ୍ତ୍ର ଶାସନରେ ବିରୋଧୀ ଦଳର ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ଶକ୍ତିଶାଳୀ ବିରୋଧୀଦଳ ନଥିଲେ ଶାସନ କ୍ଷେତ୍ରରେ ସ୍ୱେଚ୍ଛାଚାର ପ୍ରବେଶ କରେ । ନୀତି, ଆଦର୍ଶ, ମୂଲ୍ୟବୋଧର ଗୁରୁତ୍ୱ କମିଯାଏ । ଜନସାଧାରଣ ନିର୍ମଳ, ସ୍ଥିର ପ୍ରଶାସନ ପାଇବାରୁ ବଞ୍ଚିତ ହୁଅନ୍ତି ।

ବିରୋଧୀଦଳ ମାନେ ଏକତ୍ରିତ ହୋଇ ଶାସକଦଳର ଦୋଷତ୍ରୁଟି, ଦୁର୍ନୀତି, ଆଇନ ଶୃଙ୍ଖଳା ସମ୍ପର୍କରେ ଆଲୋକପାତ କରି ଚେତାଇ ଦିଅନ୍ତି । ବେଳେବେଳେ ନିର୍ବାଚନରେ ଜିତି ମଧ୍ଯ ବହୁ ନେତା କ୍ଷମତା ବଳୟ ମଧ୍ୟରେ ପ୍ରବେଶ କରି ନପାରି ନିଜକୁ ଅସହାୟ ମନେ କରନ୍ତି । ଅଥଚ ପରାଜିତ ନେତା-ମାନଙ୍କର ଆନ୍ଦୋଳନ, ର୍‌ୟାଲି, ଧମକରେ ଶାସନକଳ ବି ଟଳିପଡ଼େ । ଅତଏବ ଦେଶର ସବୁ ପରାଜିତ ପ୍ରତିନିଧିମାନଙ୍କୁ ଏକଜୁଟ୍ କରି ଯଦି ଏକ ରାଷ୍ଟ୍ରୀୟ ପରାଜିତ ପ୍ରତିନିଧି ସଭା ଗଠନ କରାଯାଆନ୍ତା, ତେବେ ? ? ଏଇକଥା ଭାବୁ ଭାବୁ ହାରୁଲାଲ ହାର୍‌କିନି ଦାସଙ୍କ ମନ କୁରୁଳି ଉଠିଲା । ସଙ୍ଗେ ସଙ୍ଗେ ସେ ନିଜର ବନ୍ଧୁବର୍ଗ, ଚାମଚା, ଅନୁଗତ ହୁଜୀ, ପାଜୀଙ୍କ ସହିତ ବିସ୍ତାର ଆଲୋଚନା ଆରମ୍ଭ କରିଦେଲେ । କେତେକ ଏ ଦିଗରେ ନିରୁତ୍ସାହିତ କଲେ ମଧ୍ଯ ଅଧିକାଂଶ ନିଜର ସମର୍ଥନ ଜଣାଇଲେ । ହାରୁଲାଲ ନିଜର ଅଭିନବ ଯୋଜନା ସଫଳତା ଆଡ଼କୁ ଗତି କରୁଥିବା ଜାଣି ଅଧିକ ଉଲ୍ଲସିତ ହୋଇ ପଡ଼ିଲେ । ସେ ଯେଉଁ ଯୋଜନା ପ୍ରସ୍ତୁତ କଲେ ତହିଁର ରୂପରେଖ ଏଇପରି—

ସବୁ ଦଳର ପରାଜିତ ପ୍ରତିନିଧିମାନଙ୍କୁ ନେଇ ରାଷ୍ଟ୍ରୀୟ ପରାଜିତ ପ୍ରତିନିଧି ସଭା ଗଠିତ ହେବ । ପ୍ରତ୍ୟେକ ରାଜ୍ୟରେ ଏହାର ଶାଖା ଖୋଲାଯିବ । କେନ୍ଦ୍ରୀୟ ଅଧ୍ଯକ୍ଷ, ସାଧାରଣ ସମ୍ପାଦକ, ମୁଖପାତ୍ର, ସଚେତକ, ରାଷ୍ଟ୍ରୀୟ କାର୍ଯ୍ୟ-କାରିଣୀ ରହିବା ସଙ୍ଗେ ସଙ୍ଗେ ରାଜ୍ୟମାନଙ୍କରେ ମଧ୍ଯ ଅନୁରୂପ ପ୍ରାଦେଶିକ, ଜିଲ୍ଲାସ୍ତରୀୟ, ବ୍ଲକସ୍ତରୀୟ ସଙ୍ଗଠନ ରହିବ । ଏଇ ସଙ୍ଗଠନ ପକ୍ଷରୁ ବିଭିନ୍ନ ସମସ୍ୟାର ସମାଧାନ ପାଇଁ ସରକାରଙ୍କୁ ଗଠନମୂଳକ ପରାମର୍ଶ ଦିଆଯିବ । ସରକାର ନ ମାନିଲେ ଲୋକଙ୍କୁ ଜୁଟାଇ ଗଣ ଆନ୍ଦୋଳନ କରାଯିବ । ଯେଉଁ-ମାନେ ପରବର୍ତ୍ତୀ ସମୟରେ ନିର୍ବାଚନରେ ଜିତିବେ ସେମାନେ ଏଇ ସଙ୍ଗଠନରୁ ଇସ୍ତଫା ଦେବେ । ଜିତିଥିବା ପ୍ରତିନିଧିଙ୍କ ମଧ୍ୟରୁ ଯେଉଁମାନେ ହାରିବେ ସେମାନେ ଏଥିରେ ସାମିଲ ହେବେ । ଫଳରେ ଦଳବଦଳ ନୀତିକୁ ସମ୍ପୂର୍ଣ୍ଣ ରୂପେ ପରିହାର କରାଯାଇ ପାରିବ । ହିଂସାକାଣ୍ଡ, ସାଂପ୍ରଦାୟିକ ଦଙ୍ଗା, ଅଶାନ୍ତି, ଅସ୍ଥିରତାକୁ ମଧ୍ଯ ରୋକାଯାଇ ପାରିବ ।

ହାରୁଲାଲଙ୍କର ଏଇ ପ୍ରସ୍ତାବକୁ ସମଗ୍ର ଦେଶର ବିଭିନ୍ନ ପ୍ରାନ୍ତରୁ ପ୍ରବଳ ସମର୍ଥନ ମିଳିଲା । ତାଙ୍କରି ଅଧ୍ଯକ୍ଷତାରେ ଏବେ ରାଷ୍ଟ୍ରୀୟ ପରାଜିତ ପ୍ରତିନିଧି ସଭା ଗଠିତ ହୋଇଛି । ଏହାର ମିଳିତ ଇସ୍ତାହାର ପ୍ରକାଶ ପାଇଛି ଯେଉଁମାନେ ଆଗାମୀ ନିର୍ବାଚନରେ ପରାଜିତ ହେବେ ସେମାନେ ମନ ଦୁଃଖରେ ଭାଙ୍ଗି ନପଡ଼ି

ଧୈର୍ଯ୍ୟର ସହିତ ଏଇ ସଙ୍ଗଠନରେ ସାମିଲ ହେବାକୁ ଆହ୍ୱାନ ଦିଆଯାଇଛି । ଆପଣ ଯଦି କୌଣସି ଦଳର ନେତା ହୋଇଥାନ୍ତି ଏବଂ ବିପଖ୍ୱତ ହାଓ୍ୱା ଯୋଗୁଁ ହେଉ ଅଥବା ଆପଣଙ୍କର କୁକର୍ମ, ଦୁର୍ନୀତି ଯୋଗୁଁ ହେଉ ନିର୍ବାଚନ ରଣାଙ୍ଗନରେ କଚଡ଼ା ଖାଇଥାନ୍ତି ତେବେ କାଳବିଳମ୍ବ ନକରି ହାରୁଲଲଙ୍କ ରଷ୍ଟ୍ରୀୟ ପରଜିତ ପ୍ରତିନିଧି ସଭରେ ଯୋଗ ଦିଅନ୍ତୁ ।



# ବନ୍ଦ୍ ତାମ୍ସା ଓ ଖୋଲା ରାଜନୀତି

ବନ୍ଦ୍ କରିବା ଓ ଖୋଲା ରଖିବା ଦୁଇଟି ପରସ୍ପର ବିରୋଧୀ କାର୍ଯ୍ୟ । କେତେବେଳେ କିଏ କ'ଣ ବନ୍ଦ୍ କଲା ବା କିଏ ଖୋଲା ରଖିଲା ସେଥିରେ କାହାର କିଛି ଯାଏ ଆସେନା । କିନ୍ତୁ, ଏଥି ସହିତ ଯଦି ରାଜନୈତିକ ସମ୍ପର୍କ ଯୋଡ଼ି ଦିଆଗଲା ତେବେ କଥା ସରିଲା । ଏବେ ଆମ ଭାରତୀୟ ଗଣତନ୍ତ୍ର ବନ୍ଦ୍ ଆଉ ଖୋଲାକୁ ନେଇ ଚାଲିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ବନ୍ଦ୍ କରିବା ଏବଂ ଖୋଲା ରଖିବା ଏକ ପ୍ରକାର ତାମ୍ସା ବା ଫାର୍ଶରେ ପରିଣତ ହେଲାଣି । ଭାରତ ସ୍ୱାଧୀନତା ପାଇବା ଠାରୁ ଆମର ନେତାମାନେ ବନ୍ଦ୍ ତାମସା ଓ ଖୋଲା ରାଜନୀତି କରି ଆସୁଛନ୍ତି । ଯେ କୌଣସି ଦୁର୍ଘଟଣାଟିଏ ଘଟିଗଲେ ବିରୋଧୀ ଦଳର ନେତାମାନେ ବନ୍ଦ୍ ଡାକରା ଦିଅନ୍ତି । ସରକାରୀ କଳ ସବୁ ପ୍ରକାର କୌଶଳ ଖଟାଏ ଖୋଲା ରଖିବାକୁ । ଏଇ ବନ୍ଦ୍ ଓ ଖୋଲା ରାଜନୀତି ମଧ୍ୟକୁ ହିଂସାକାଣ୍ଡ, ପୋଡ଼ାଜଳା, ହତ୍ୟା, ଲୁଣ୍ଠନ ଆଦି ପଶି ଆସନ୍ତି । ଅବସ୍ଥା ଅସମ୍ଭାଳ ହୋଇପଡ଼େ ।

ଆଜି ଓଡ଼ିଶା ବନ୍ଦ୍, କାଲି ଆସାମ ବନ୍ଦ୍, ପଅର ଦିନ ପଞ୍ଜାବ ବନ୍ଦ୍, ତା ପରଦିନ କାଶ୍ମୀର ବନ୍ଦ୍ ପୁଣି ବମ୍ବେ ବନ୍ଦ, କଲିକତା ବନ୍ଦ୍, ନାଗପୁର ବନ୍ଦ୍, ଲକ୍ଷ୍ନୌ ବନ୍ଦ୍, ଦିଲ୍ଲୀ ବନ୍ଦ୍, ବାରକ୍‌ଭେଲି ବନ୍ଦ୍, ଅଯୋଧ୍ୟା ବନ୍ଦ୍, ଟ୍ରେନ୍ ବନ୍ଦ୍, ବସ, ଟ୍ରକ, ଅଟୋ ବନ୍ଦ୍, ସହର ବନ୍ଦ୍, ଅଫିସ୍ ବନ୍ଦ୍, କାରଖାନା ବନ୍ଦ୍, କୋର୍ଟ ବନ୍ଦ୍, କଚେରୀ ବନ୍ଦ୍ ଆଦି ଅନେକ ବନ୍ଦ୍ । ପୁଣି ବାରଘଣ୍ଟିଆ ବନ୍ଦ୍, ଦିନିକିଆ ବନ୍ଦ୍, ତିନି ଦିନିଆ, ସାତ ଦିନିଆ, ଅନିର୍ଦ୍ଦିଷ୍ଟିଆ ବନ୍ଦ୍ ହେଉ ହେଉ ଅନେକ ଥର ଭାରତ ବନ୍ଦ୍ ବି ହୋଇଗଲାଣି । କେତେ ଜାତୀୟ ସମ୍ପତ୍ତି ନଷ୍ଟ ହେଲାଣି, କେତେ ଲୋକ ମଲେଣି କିଏ ତାର ହିସାବ ରଖୁଛି । ଦେଶ ଏକବିଂଶ ଶତାବ୍ଦୀ ଆଡ଼କୁ ଦ୍ରୂତଧାବିତ ହେଉଥିବା ବେଳେ ଏମିତି ବାରମ୍ବାର "୦" ହୋଇଗଲେ ଆମ ପ୍ରଗତି ବାଧାପ୍ରାପ୍ତ ହେବନାହିଁ କି ? ବନ୍ଦ୍ ତାମସା ଓ ଖୋଲା ରଖିବାର ଅପଚେଷ୍ଟା ମାଧ୍ୟମରେ ଆମ ନେତାମାନେ ବେଶ୍

ଫାଇଦା ହାସଲ କରନ୍ତି । ବନ୍ଦ୍ ଡ଼ାକରା ଦେଇ ନିର୍ବାଚନରେ ଶାସକଦଳଙ୍କୁ ଚିତ୍‌ପଟାଂ କରାଇ ବିରୋଧୀ ବାରଦଳିଆ, ଷୋହଳ ଦଳିଆ କାରପଟ୍‌ଦାର ମାନେ ଶାସନ କ୍ଷମତା ଅକ୍ତିଆର କରିଥିବାର ନଜୀର ଆମ ଦେଶରେ ଅଛି ।

ସାଧାରଣତଃ ଜାତୀୟ ଦିବସ ମାନଙ୍କରେ ଦେଶର କାର୍ଯ୍ୟାଳୟଗୁଡ଼ିକ ବନ୍ଦ୍ ରହେ । କୌଣସି ଜାତୀୟ ନେତା, ମନ୍ତ୍ରୀ, ପ୍ରଧାନ ମନ୍ତ୍ରୀ, ରାଷ୍ଟ୍ରପତିଙ୍କ ମୃତ୍ୟୁରେ ମଧ୍ୟ ବନ୍ଦ୍ ରହେ ଏବଂ ରାଷ୍ଟ୍ରୀୟ ଶୋକ ପାଳନ କରାଯାଏ । କିନ୍ତୁ ଆଜିକାଲି ବନ୍ଦ୍ ଆହ୍ୱାନ ଏକ ସାଧାରଣ ଘଟଣାରେ ପରିଣତ ହୋଇଗଲଣି । କୋଉଠି ବୋମା ଫୁଟିଲେ, କୋଉଠି କିଏ କାହାକୁ ଧର୍ଷଣ କଲେ କି ହତ୍ୟା କଲେ, କୋଉଠି ବସ, ଟ୍ରକ କିମ୍ବା ଟ୍ରେନର ଦୁର୍ଘଟଣା ଘଟି ଲୋକ ମରିଗଲେ ସଙ୍ଗେ ସଙ୍ଗେ ବନ୍ଦ୍ ଡାକରା ଦିଆଯାଉଛି ।

କେଉଁଦଳ ଶାସନ କରୁ ବା କେଉଁଦଳ ବିରୋଧୀ ମଞ୍ଚରେ ବସନ୍ତୁ, ଏଥିନେଇ ଜନସାଧାରଣ ଆଦୌ ଚିନ୍ତିତ ନୁହଁନ୍ତି । ମାତ୍ର ଶାସକ ବା ବିରୋଧୀ-ଦଳମାନଙ୍କ ପକ୍ଷରୁ ଥରେ ବନ୍ଦ୍ ଡ଼ାକରା ଦିଆଗଲେ ସମସ୍ତେ ଭୟରେ ଗୁନିଆଁ ହୋଇଯାଆନ୍ତି । ଡରତ ଡର ହାରାମଜାଦାଙ୍କୁ ଡର । ସନ୍ତ୍ରାସବାଦୀଏ ତ ହାରାମଜାଦାଙ୍କ ଗୋଷ୍ଠ ବାପ । ତାଙ୍କ ନାଁ ଶୁଣିଲେ ଆମ୍ଭାକୁ ଶର୍ଦ୍ଦି ଧରିଯାଏ । ବନ୍ଦ୍ କଲେ ଖରାପ । ନ କଲେ ବି ଖରାପ । ମଣିଷ କୋଉ କୂଳର ହେବ ଯେ ? ବନ୍ଦ୍-ଖୋଲା ମଝିରେ ଉବେଇ ଟୁବେଇ ହୋଇ ଧ୍ୱଂସ ଦ୍ୱୀପରେ ହୋସ୍ ଉଡ଼ି ଯାଇଥିବ ।

ପ୍ରଥମେ ଆମ ଦେଶର ଖୋଲାପଟ ସମ୍ପର୍କରେ ଆଲୋଚନା କରାଯାଉ । ସବୁ ଯୁଗରେ ସବୁ ସମୟରେ ଭାରତର ଦ୍ୱାର ସବୁରି ପାଇଁ ଖୋଲା ରହିଆସିଛି । କିଏ ବଣିଆ ସାଜି, କିଏ ଶରଣାର୍ଥୀ ସାଜି, କିଏ ପାଦ୍ରୀ ହୋଇ, ଗୁପ୍ତଚର କି ସନ୍ତ୍ରାସବାଦୀ ସାଜି ଅକ୍ଳେଶରେ ଭାରତରେ ପ୍ରବେଶ କରିଛନ୍ତି । ନିଜର ଫାଇଦା ହାସଲ କରି ଏ ଦେଶର ଜନସାଧାରଣଙ୍କୁ ଲାତ ମାରିଛନ୍ତି । ସରଳତାର ସୁଯୋଗ ନେଇ କ୍ଷମତା ଡୋରି ହାତରେ ଧରି ନଚେଇଛନ୍ତି । ଯେ ଖୋଲମ୍ ଖୋଲା ଭାରତ ବର୍ଷ । ଏଠି ସବୁକିଛି ଖୋଲା ଖୋଲି ରୁଲେ । ନେତାଙ୍କର ପକେଟ ଖୋଲା, ଦାତାଙ୍କର ହାତ ଖୋଲା, ମନ୍ତ୍ରୀଙ୍କ ପୁଡ଼ିଆ ପୁଣି ଖୋଲା, କଳା ବେପାରୀଙ୍କ ପଛ ଦରଜା ଖୋଲା, ରାମରାଜ୍ଙ୍କ ପାଟି ଖୋଲା, ଦୁର୍ନୀତିର ସାହାଣ ମେଲା, ସ୍କୁଲ, କଲେଜ, ଦଫ୍ତର, କଳକାରଖାନା, ଥାନା, ଖଜଣା-ଖାନା, କଂସେଇଖାନା, ପାଇଖାନା, ମଦ କାରଖାନା ସବୁ ଖୋଲା ।

ବ୍ୟବସାୟୀମାନେ ନେତାଙ୍କୁ ଖୋଲା ହାତରେ ଚାନ୍ଦା ଦିଅନ୍ତି । ଗୁଣ୍ଡାମାନେ ଛାତିର ବୋତାମ ଖୋଲି ଖୋଲମ୍ ଖୋଲା ଛୁରା, ବନ୍ଧୁକ ଧରି ବୁଲନ୍ତି । ସନ୍ତ୍ରାସବାଦୀମାନେ ଖୋଲଖୋଲି ଗୁଳି ଚଳାଇ, ବୋମା ପକାଇ ହଜାର ହଜାର ନିରୀହ ଜନସାଧାରଣଙ୍କ ପ୍ରାଣପକ୍ଷୀଙ୍କୁ ଖୋଲା ଆକାଶରେ ଉଡ଼ାଇ ଦିଅନ୍ତି । ମନ୍ତ୍ରୀମାନେ ଖୋଲା ଜିପ୍‌ରେ ଶୋଭାଯାତ୍ରା କରନ୍ତି । ଖୋଲା ମଞ୍ଚରେ ଭାଷଣ ଦିଅନ୍ତି । ଏ ଦେଶରେ ତ ଖୋଲା ଖୋଲି ସମ୍ବିଧାନ ପୋଡ଼ାଯାଏ, ନେତା ମନ୍ତ୍ରୀଙ୍କର ଶବ ପୋଡ଼ାଯାଏ, ଖୋଲା ଚିଠି ଲେଖାଯାଏ, ଖୋଲଖୋଲି ଆଲୋଚନା କରିବାକୁ ଆହ୍ୱାନ ଦିଆଯାଏ । ଖୋଲମ ଖୋଲା ହତ୍ୟା,ଧର୍ଷଣ, ଲୁଣ୍ଠନ କରାଯାଏ । ବେଳେବେଳେ ସରକାରୀ ଓ ବିରୋଧୀଦଳଙ୍କ ମଧ୍ୟରେ ଏଇ ବନ୍ଦ୍ ଓ ଖୋଲାକୁ କେନ୍ଦ୍ରକରି ମହାଭାରତର ଅଧ୍ୟାୟେ ଦି' ଅଧ୍ୟାୟ ହୋଇଯାଏ ।

ବନ୍ଦ୍ ହେଲେ ଖୋଲାଯାଏ । ଖୋଲା ଥିଲେ ବନ୍ଦ୍ କରିବାର ବେଶୀ ଆବଶ୍ୟକତା ନଥାଏ । ଅବଶ୍ୟ ବେଶୀ ଖୋଲିଗଲେ ଖରାପ । ଏବେ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀ ଏବଂ ପ୍ରବାସୀ ଭାରତୀୟଙ୍କ ପୁଞ୍ଜି ଲଗାଣ ପାଇଁ ଭାରତର ସବୁ ଦ୍ୱାର ଖୋଲି ଦିଆଯାଇଛି । ଏହାର ପରିଣତି କ'ଣ ହେବ କିଏ କହିପାରିବ ? ତେବେ ବନ୍ଦ୍ ଓ ଖୋଲା ମଧ୍ୟରୁ କୋଉଥିରେ ଲାଭ, କୋଉଥିରେ କ୍ଷତି ବିଚାର କରି ପଦକ୍ଷେପ ନିଆଯିବା ଉଚିତ ।

ଥରେ ବନ୍ଦ୍ ଡାକରା ଦିଆଗଲେ ଟ୍ରେନ୍ ଚଳାଚଳ ଠାରୁ ଆରମ୍ଭ କରି ବସ, ଟେମ୍ପୋ, ଟ୍ରକ, ଟ୍ରେକର, ରିକ୍ସା, ସାଇକେଲ, ସ୍କୁଟର, ଜିପ ପର୍ଯ୍ୟନ୍ତ ସବୁ ଠପ୍ । କଳକାରଖାନା, କାର୍ଯ୍ୟାଳୟ, ସ୍କୁଲ, କଲେଜ, କଚେରୀ ସବୁ ବନ୍ଦ୍ । ଏଇ ବନ୍ଦ୍ ଡାକରାର ପ୍ରଭାବ ଏତେ ବେଶୀ ଯେ, ଖାଲି ଘୋଷଣା କରିଦେବା ମାତ୍ରେ ସବୁ ଆପେ ଆପେ ବନ୍ଦ୍ ହୋଇଯାଏ । ବନ୍ଦ୍ କରିବାକୁ କେହି ବାଧ କରିବାକୁ ଆସିବା ଦରକାର ହେଉନାହିଁ ।

କାରଣ ବନ୍ଦ୍ ନକଲେ ଦୋକାନ ପୋଡ଼ି, ବସପୋଡ଼ି, ଭଙ୍ଗାରୁଜା, ଦଙ୍ଗା ହାଙ୍ଗାମାର ସ୍ରୁଅ ଛୁଟେ । ମଣ୍ଡଳ କନ୍ଦଳ ସମୟରେ ହେଉ, ଗୁର୍ଖାଲାଣ୍ଡ, ବୋଡ଼ୋଲାଣ୍ଡ, ଝାଡ଼ଖଣ୍ଡ ଆନ୍ଦୋଳନ ସମୟରେ ହେଉ, ଯେଉଁ ପୋଡ଼ାଜଳା, ଧ୍ୱଂସଲୀଳା, ହତ୍ୟା, ଲୁଟତରାଜ ହୋଇଯାଇଛି ତାର ଇୟତ୍ତା ନାହିଁ । ବମ୍ବେ, କଲିକତା, ଦିଲ୍ଲୀ, ମାନ୍ଦ୍ରାଜ, କୋଏମ୍ବାଟୁର ବା ଅନ୍ୟାନ୍ୟ ସ୍ଥାନରେ ବୋମା ବିସ୍ଫୋରଣ ଜନିତ ବନ୍ଦ୍ ଆହ୍ୱାନକୁ ନେଇ ଯେଉଁ କ୍ଷତି ହୋଇଯାଇଛି କିଏ ତାର

ହିସାବ ରଖୁଛି । ସରକାରଙ୍କ ପକ୍ଷରୁ ବିଭିନ୍ନ ବନ୍ଦ୍ ଡାକରାକୁ ଚ୍ୟାଲେଞ୍ଜ୍ କରି ଖୋଲା ରଖିବାକୁ ଯେଉଁ ଅପଚେଷ୍ଟା କରାଯାଏ, ସେଥିରେ ବି କମ୍ କ୍ଷତି ହୁଏ ନାହିଁ । "ବନ୍ଦ୍ ଓ ଖୋଲ" ପ୍ରଭାବରେ ଅର୍ଥନୀତି ବିପର୍ଯ୍ୟସ୍ତ ହେଉନାହିଁ କି ? ଅଭାବ, ଅନାଟନ, ବେକାରୀ, ଦରବୃଦ୍ଧି ଆକାଶ ଛୁଆଁ ହେଉ ନାହିଁ କି ?

କେତେଦିନ ଆଉ ଏମିତି ବନ୍ଦ୍ ତାମସା ଓ ଖୋଲା ରାଜନୀତି ଚାଲିଥିବ ? ପୋଡ଼ାଜଳା, ହିଂସାକାଣ୍ଡ, ହତ୍ୟା, ସାଂପ୍ରଦାୟିକ ଦଙ୍ଗା ଚାଲିଥିବ ? ଯେଉଁମାନେ ଯେତେବେଳେ ବନ୍ଦ୍ ଆହ୍ୱାନ ଦେଉଛନ୍ତି ସେମାନେ ହିଂସାକାଣ୍ଡ ପରିହାର କରନ୍ତୁ । ନେତା-ମନ୍ତ୍ରୀମାନେ ଦୁର୍ନୀତି, ଅତ୍ୟାଚାର, ଭ୍ରଷ୍ଟାଚାର ବନ୍ଦ୍ କରନ୍ତୁ । ଦେଶରେ ଗଣହତ୍ୟା, ଗଣଧର୍ଷଣ ବନ୍ଦ୍ କରାଯାଉ । ଦେଶର ସ୍ୱାଧୀନତା, ସାର୍ବଭୌମତ୍ୱ, ଜାତୀୟ ସଂହତିର ସୁରକ୍ଷା ପାଇଁ ସମସ୍ତେ ଖୋଲା ଖୋଲି ଆଲୋଚନା କରି ସବୁ ସମସ୍ୟାର ସମାଧାନ ପାଇଁ ହୃଦୟ ଖୋଲା ରଖନ୍ତୁ ।



# ବଞ୍ଚାଅ, ବଞ୍ଚାଅ ; ମୋତେ ବଞ୍ଚାଅ

"ବଞ୍ଚାଅ" ର ଅର୍ଥ ବଞ୍ଚେଇବା ଅଥବା ବଞ୍ଚେଇ ରଖିବା ପାଇଁ ଆହ୍ୱାନ ଦେବା । ପ୍ରତିଶ୍ରୁତି, ଆହ୍ୱାନ, ସ୍ଲୋଗାନ, ଦାବୀ ଏବଂ ଆନ୍ଦୋଳନ ଏସବୁ ଭାରତୀୟ ରାଜନୀତିର ଗୋଟିଏ ଗୋଟିଏ ଲକ୍ଷଣ । ଆଦବ କାଇଦା । ଏଗୁଡ଼ିକର ସଫଳ ପ୍ରୟୋଗ କରି ଜାଣିଲେ ଜଣେ ନିଶ୍ଚିତ ଭାବରେ ନେତା ପାଲଟିଯାଇ ପାରିବ ଏଥିରେ ସନ୍ଦେହ ନାହିଁ ।

ଗାଁ ବଞ୍ଚାଅ, ରାଜ୍ୟ ବଞ୍ଚାଅ, ପରିବେଶ ବଞ୍ଚାଅ, ପଞ୍ଜାବ ବଞ୍ଚାଅ, ଆସାମ ବଞ୍ଚାଅ, କାଶ୍ମୀର ବଞ୍ଚାଅ, ଖାଦ୍ୟ ବଞ୍ଚାଅ, ପେଟ୍ରୋଲ ବଞ୍ଚାଅ, ଓଡ଼ିଶା ବଞ୍ଚାଅ, ଚିଲିକା ବଞ୍ଚାଅ, ଅଂଶୁପା ବଞ୍ଚାଅ, ନର୍ମଦା ବଞ୍ଚାଅ, ବିହାର ବଞ୍ଚାଅ ଆଦି ନାନା ପ୍ରକାର ଆହ୍ୱାନ ଖୁବ୍ ସଫଳତାର ସହିତ ପ୍ରୟୋଗ କରାଯାଇ ସାରିଛି । ଏସବୁ ମାଧ୍ୟମରେ ବହୁ ନେତା ଲୋକପ୍ରିୟତାର ଚରମ ସୋପାନରେ ପହଞ୍ଚି ପାରିଛନ୍ତି । ପ୍ରମାଣ ଦେବାର ଆବଶ୍ୟକତା ନାହିଁ । ବି.ଜେ.ପି. ପକ୍ଷରୁ ଭାରତ ବଞ୍ଚାଅ, କାଶ୍ମୀର ବଞ୍ଚାଅ, ଅଯୋଧ୍ୟା ବଞ୍ଚାଅ ଧ୍ୱନି ଦେଇ କେତେଦୂର ସଫଳତା ମିଳିଛି ସମସ୍ତେ ଜାଣନ୍ତି । ଓଡ଼ିଶା ବଞ୍ଚାଅ ଆହ୍ୱାନ ଦେଇ କଳିଙ୍ଗ ଷଣ୍ଢ ବିଜୁ ପଟ୍ଟନାୟକ ସତେଇଶ ବର୍ଷ ପରେ ମଧ୍ୟ କ୍ଷମତା ଚଉକି ଅକ୍ତିଆର କରିଥିଲେ । ନେତାମାନେ ବଞ୍ଚାଅ ଆହ୍ୱାନ ଦିଅନ୍ତି । ନିଜେ ବଞ୍ଚନ୍ତି । ଯାହାକୁ ବଞ୍ଚାଇବା ପାଇଁ ଆହ୍ୱାନ ଦିଅନ୍ତି ତାହା ବଞ୍ଚିଲା କି ମଲା କେହି ବୁଝନ୍ତି ନାହିଁ ।

ତଥାପି "ବଞ୍ଚାଅ" ଆହ୍ୱାନରେ କି ଯାଦୁ ଅଛି କେଜାଣି ପ୍ରତ୍ୟେକ ଥର ଏହା ନୂଆ ରୂପ ନେଇ ଉକୁଟି ଉଠେ । ଲୋକେ ମାତନ୍ତି । ଆନ୍ଦୋଳନ, ଘଷାଘେରୋ, ହିଂସାକାଣ୍ଡ ପର୍ଯ୍ୟନ୍ତ କଥାଯାଏ । ବେଳେ ବେଳେ ଶାସନକଳ ବି ଓଲଟି ପଡ଼େ । ଆମ ନେତାମାନେ ନିଜେ ବଞ୍ଚିବା ପାଇଁ, ନିଜ ଲୋକଙ୍କୁ ବଞ୍ଚାଇବା ପାଇଁ ନାନା କୌଶଳ କରନ୍ତି । ସାଧାରଣ ଲୋକଙ୍କ କଥା ପଚାରେ କିଏ ? ବଞ୍ଚି ବଞ୍ଚାଇବା ଶପଥ ନେଇ "ଆପେ ବଞ୍ଚିଲେ ବାପର ନାମ"

ନ୍ୟାୟରେ ସମସ୍ତେ ଆଗେଇ ଚ଼ଲନ୍ତି । ଅଥଚ "ଇଜ୍ଜତ ବଞ୍ଚାଅ"ର ଆହ୍ୱାନ ଦେଇ କେତେ ଜଣ ଅସହାୟା ଯୁବତୀ ସହଯୋଗ ପାଇଛନ୍ତି ? ଏବେ ନୂତନ ଭାବରେ "ମୋତେ ବଞ୍ଚାଅ" ଆହ୍ୱାନ ଦେଇ ଗିରିଧାରୀ ବାବୁ ଯେଉଁ ସଫଳତା ହାସଲ କରିଛନ୍ତି ତାହା ସମସ୍ତଙ୍କର ନିହାତି ଜାଣିବା କଥା ।

ଗିରିଧାରୀ ବାବୁଙ୍କୁ ନଜାଣେ କିଏ ? ଦିଲ୍ଲୀ ଠାରୁ ଅଖ୍ୟାତ ପଲ୍ଲୀଯାଏ ତାଙ୍କର ଜନପ୍ରିୟତା ବ୍ୟାପିଛି । ସେ ଏକାଧାରରେ ଜଣେ ଟାଣୁଆ ନେତା, ବକ୍ତା, ପ୍ରଭାବଶାଳୀ ମନ୍ତ୍ରୀ, ସଙ୍ଗଠକ, ସମାଜ ସେବୀ ଏବଂ ପ୍ରଚ୍ଛନ୍ନ ଗାନ୍ଧୀବାଦୀ ବ୍ୟକ୍ତି । ଏଇ ଦୃଷ୍ଟିରୁ ତାଙ୍କୁ ପ୍ରଚ୍ଛନ୍ନ ଗାନ୍ଧୀବାଦୀ କୁହାଯାଇପାରେ, ଯେହେତୁ ସେ ଗାନ୍ଧୀଙ୍କର ନୀତି ଓ ଆଦର୍ଶକୁ ଲୋକଙ୍କ ଆଗରେ ବଖାଣନ୍ତି ମାତ୍ର ନିଜେ ମାନନ୍ତି ନାହିଁ । ଉଦାହରଣ ସ୍ୱରୂପ ସେ ନିଶା ନିବାରଣ ଆନ୍ଦୋଳନର ପ୍ରବକ୍ତା ସାଜନ୍ତି ଅଥଚ ବିଦେଶୀ ପାନୀୟ ନହେଲେ ଭାଷଣ ଦେଇ ପାରନ୍ତି ନାହିଁ । ଯୌତୁକ ବିରୋଧରେ ସ୍ୱର ଟେକି ମଧ୍ୟ ସର୍ବାଧିକ ଦାମୀ ଯୌତୁକ ନେଇ ନିଜ ପୁଅକୁ ବାହା କରେଇଛନ୍ତି । ସଦ୍‌ଭାବନାର କଥା କହନ୍ତି, ନିଜେ ଦଙ୍ଗା ଲଗେଇ ରଙ୍ଗ ଦେଖନ୍ତି । ନିଜର ପ୍ରତିଦ୍ୱନ୍ଦୀମାନଙ୍କୁ ଗୁଣ୍ଡା ଲଗେଇ ହଇରାଣରେ ପକାନ୍ତି, ପୁଣି ସର୍ବସାଧାରଣରେ ତଥାକଥିତ ଅତ୍ୟାଚାରର ପାଇଁ କ୍ଷମା ପ୍ରାର୍ଥନା କରନ୍ତି । ଖୁବ୍ ଚତୁରତାର ସହିତ ସେ କାମ କରନ୍ତି, କେହି ତାର ସୁରାକ୍ ପାଆନ୍ତି ନାହିଁ । ବିଭିନ୍ନ ପ୍ରକାର ବଞ୍ଚାଅ ଆହ୍ୱାନ ଦେଇ ନାନା ଯୋଜନା କରି ରାଜକୋଷକୁ ଖୋଳ କରିବାରେ ସେ ଓସ୍ତାଦ୍ ।

କଥାରେ କହନ୍ତି ସବୁଦିନ ସମାନ ଯାଏନା । ଦୁର୍ଯ୍ୟୋଗ ଯେତେବେଳେ ଆସେ ଚତୁର୍ଦ୍ଦିଗରୁ ଅନ୍ଧକାର ଘୋଟି ଆସେ । କେହି ସାହାଯ୍ୟ କରିବାକୁ ଆଗେଇ ଆସନ୍ତି ନାହିଁ । ନିଜର ଲୋକମାନେ ମୁହଁ ବୁଲେଇ ନିଅନ୍ତି । ଏବେ ତାଙ୍କ ନାମରେ ଗୁଡ଼ାଏ ଅଭିଯୋଗ । କୋର୍ଟରେ କେଶ୍ ଚାଲିଛି । ମନ୍ତ୍ରୀପଦରୁ ସେ ଇସ୍ତଫା ଦେବାକୁ ବାଧ୍ୟ ହୋଇଛନ୍ତି । ବିରୋଧୀ ଦଳର ନେତାମାନେ ତାଙ୍କୁ ଦ୍ୱିତୀୟ ନରସିଂହ ରାଓ ବୋଲି ବର୍ଣ୍ଣନା କରୁଛନ୍ତି । ଗତ ନିର୍ବାଚନରେ ହାଇ-କମାଣ୍ଡ ତାଙ୍କୁ ଟିକେଟ ଖଣ୍ଡେ ବି ଦେଲେନାହିଁ । ଗଭୀର ଦୁଃଖ ଏବଂ ଅନୁ-ଶୋଚନାରେ ସେ ଉବୁଟୁବୁ ହେଉଥିବା ଅବସ୍ଥାରେ ତାଙ୍କର ବିଶ୍ୱସ୍ତ ବନ୍ଧୁ ଏବଂ ରାଜନୈତିକ ପରାମର୍ଶଦାତା ଯାହାଙ୍କୁ ସେ ଅନେକ ଦିନ ତଳୁ ବୈକଟ କରି ଦେଇଥିଲେ, ସେଇ ମନୋହର ବାବୁ ଆସି ପହଞ୍ଚିଗଲେ । ଆଶ୍ୱାସନା ଦେଲେ । ଧୈର୍ଯ୍ୟର ସହିତ ଆଗେଇବାକୁ ପରାମର୍ଶ ଦେଲେ । ସେ କହିଲେ ଏଇଟା ଭାରତ । ଲଣ୍ଡନ କି ଆମେରିକା ନୁହେଁ । ଏଠିକା ଲୋକେ ଆତ୍ମସଚେତନ

ନୁହଁନ୍ତି । ଏମାନଙ୍କୁ ବାରମ୍ବାର ଭୁଟେଇ ଫାଇଦା ହାସଲ କରାଯାଇପାରେ । ସେଥିପାଇଁ ଧୈର୍ଯ୍ୟ ଏବଂ କାଇଦା ଦରକାର ।

ଭାରତରେ ଶାସକଦଳ ଓ ବିରୋଧୀଦଳ ବ୍ୟତୀତ ଅନ୍ୟ ବିକଳ୍ପ ନାହିଁ । ଶାସକ ଦଳ ଉପରେ ବିମୁଖ ହେଲେ ଲୋକେ ଆଖି ବୁଜି ବିରୋଧୀ ଦଳକୁ ଭୋଟ ଦେଇ ଗଦିରେ ବସାନ୍ତି । ସେମାନେ ତ ସେଇ ଏକା ଗାଈର ଗୋବର । ଭାରତୀୟ ଜଳବାୟୁରେ ପୁଷ୍ଟ । ସେମାନେ ଅଲଗା ହୁଅନ୍ତେ କିପରି ? ଦୁର୍ନୀତି, ଦଙ୍ଗା, ଭ୍ରଷ୍ଟାଚାର, ଅସ୍ଥିରତା, ଅଶାନ୍ତି ପୁଣି ବଢ଼େ । ଲୋକେ ମୁହଁ ବୁଲେଇ ନେଇ ପୂର୍ବର ସେଇ ଶାସକମାନଙ୍କୁ ଆଉଥରେ କ୍ଷମତାକୁ ଫେରାଇ ଆଣନ୍ତି । ନୂଆ ଭାବମୂର୍ତ୍ତି ଧରି ନୂଆ ନୂଆ ପ୍ରତିଶ୍ରୁତି ଦେଇ, ପ୍ରଭାବଶାଳୀ ସ୍ଲୋଗାନ ଦେଇ ଜୁଟି ଯାଆନ୍ତି ଏବଂ ନିଜର ଫାଇଦା ହାସଲ କରନ୍ତି । ଭୋଟର ମାନେ ସବୁ ଭୁଲିଯାଆନ୍ତି । ସମୟ ତାଙ୍କୁ ସବୁ ଭୁଲେଇ ଦିଏ ।

ବନ୍ଧୁଙ୍କ ପରାମର୍ଶରେ ଗିରିଧାରୀ ବାବୁ ସବୁ ପଛ କଥା ଭୁଲିଗଲେ । ନୂଆ ସ୍ଲୋଗାନ ବାହାର କଲେ "ମୋତେ ବଞ୍ଚାଅ" । ଭୋଟର ମାନଙ୍କ ଗୋଡ଼-ତଳେ ପଡ଼ିଗଲେ । ନିଜର ସବୁ ଦୁଷ୍କର୍ମ, ଦୁର୍ନୀତିର କଥା ମାନିଗଲେ । କହିଲେ ମୋ କ୍ଷେତ୍ରରେ ଅନ୍ୟ ଯିଏ ଥିଲେ ମଧ୍ୟ ସେୟା କରିଥାନ୍ତା । ମୁଁ ଯାହାବି କରିଛି କେବଳ ମୋ ନିଜର ସ୍ୱାର୍ଥ ପାଇଁ ନୁହେଁ । ଅନ୍ୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ମଧ୍ୟ ମୋତେ ଅନେକ କିଛି କରିବାକୁ ପଡ଼ିଛି । ଏଇ ଥରକ ପାଇଁ ମୋତେ ବଞ୍ଚାଅ । ମୋତେ ପୁଣି ସୁଯୋଗ ଦିଅ ସେବା କରିବା ପାଇଁ । ନୂଆ ଦଳ ଗଠନ କରି ତାର ମୁଖିଆ ସାଜିଲେ । ଅନ୍ୟ ଏକ ଦଳ ସହିତ ନିର୍ବାଚନୀ ବୁଝାମଣା କଲେ ଏବଂ ଚିତି କ୍ଷମତା ଦଖଲ କରିବାକୁ ସକ୍ଷମ ହେଲେ । ଏଇ ଆମ ଭାରତୀୟ ରାଜନୀତି । ଯିଏ ଯେତେ ଅପରାଧ କରୁନା କାହିଁକି ସ୍ୱୀକାର କରିଗଲେ ସାତଖଣ୍ଡ ମାଫ୍ । ନହେଲେ କ'ଣ ଏଠାରେ ଦିନକୁ ଦିନ ଦଳସଂଖ୍ୟା ବଢ଼ି ଚାଲିଥାନ୍ତା ? ଦଳବଦଳକାରୀଙ୍କ ହାତକୁ କ୍ଷମତା ଆସନ୍ତା ??



# ରୁଲ, ର୍ୟାଲି, ରିଲାକ୍ସ

ଜଣେ ବିଦେଶୀ ପର୍ଯ୍ୟଟକ ଭାରତ ପରିଭ୍ରମଣ କରି ଫେରିବା ପରେ ୱାଶିଂଟନ ଠାରେ ତାଙ୍କର ବନ୍ଧୁମାନେ ପଚାରିଲେ,—“ଭାରତ ଯାଇଥିଲ, କ’ଣ ଅନୁଭୂତି ନେଇ ଆସିଲ ?” ପର୍ଯ୍ୟଟକ ଜଣକ ହସି ହସି କହିଲେ, “ଭାରତ ଏକ ବିଶାଳ ଦେଶ । ବିଭିନ୍ନ ଭାଷା-ଧର୍ମ-ସଂପ୍ରଦାୟର ଅପୂର୍ବ ସମନ୍ୱୟ ଘଟିଛି । ଭାରତର ଗଳିକନ୍ଦିରେ ବୁଲିଲେ ଅନେକ କିଛି ଦେଖିବାକୁ ମିଳେ, ଅନେକ କଥା ଶିଖିବାକୁ ମିଳେ । ମୋତେ ଯେଉଁ କଥା ସବୁଠାରୁ ଭଲ ଲାଗିଲା ତାହା ହେଉଛି “ରୁଲ, ର୍ୟାଲି ଏଣ୍ଡ ରିଲାକ୍ସ ।” ଅର୍ଥାତ୍ ଯେଉଁମାନେ ଶାସନ କରି ଚାଲିଥିବେ, ଯେଉଁମାନେ ବିରୋଧୀ ଦଳରେ ଥାଇ ବିଭିନ୍ନ ସ୍ଲୋଗାନ ଦେଇ ର୍ୟାଲିର ଆୟୋଜନ କରୁଥିବେ ଏବଂ ଯେଉଁମାନେ ବିଭିନ୍ନ ରାଜନୈତିକ ଦଳର ଅନୁଗତ ନେତା, କୁଜା ନେତା, ଚାମଚା. ବେଲ୍ଚା, ସମର୍ଥକ ସାଜି ର୍ୟାଲିକୁ ସଫଳ କରୁଥିବେ କେବଳ ସେଇମାନେ ହିଁ ସୁଖୀ । ତାଙ୍କର କୌଣସି କଥାକୁ ପରୱା ନଥାଏ । ଦେଶର ଅବସ୍ଥା ଯାହାହେଉ, ଜନସାଧାରଣ ପଛେ ସଢ଼ୁଥାନ୍ତୁ, ସେମାନେ ନିଜର ଫାଇଦା ହାସଲରେ ବ୍ୟସ୍ତ ଥାନ୍ତି । ଭାରତୀୟ ରାଜନୀତିରେ “ରୁଲ, ର୍ୟାଲି, ରିଲାକ୍ସ”ର ଫର୍ମୁଲା ଖୁବ୍ ପ୍ରଭାବଶାଳୀ । ନେତା ସାଜିବା ପାଇଁ ସମସ୍ତେ ବ୍ୟଗ୍ର, ଉତ୍କଣ୍ଠିତ । ଯେନତେନ ପ୍ରକାରେଣ ନେତା ସାଜି, ଟିକେଟ ଖଣ୍ଡେ ହାତେଇ ନିର୍ବାଚନ ମଇଦାନକୁ ଓହ୍ଲେଇ ପଡ଼ନ୍ତି । ଭାରତୀୟ ଭୋଟରମାନେ ଆଦୌ ସଚେତନ ନୁହଁନ୍ତି । ଏଣୁ ସେମାନଙ୍କୁ ନୋଟ ଧରେଇ, ମଦ ହାଣ୍ଡିଆ ପିଆଇ ଭୋଟ ପାଇ ନେତାମାନେ ଚୌକି ଦଖଲ ପାଇଁ ଲାଗିପଡ଼ନ୍ତି । ଦରକାର ହେଲେ ଦଳବଦଳ କରି ସ୍ୱର ବଦଳାଇ ଦିଅନ୍ତି । କ୍ଷମତାର ଚଉକିରେ ଥରେ ବସିଗଲା ପରେ ତୃପ୍ତିର ନିଃଶ୍ୱାସ ମାରି ନିଶ ମୋଡ଼ନ୍ତି ଅଥବା ଯଦି ନିଶ ନଥାଏ ପୃଥୁଳ ଉଦରରେ ହାତ ବୁଲାଇ ରିଲାକ୍ସ କରନ୍ତି । କେହି କେହି କ୍ଷମତାକୁ ବଂଶାନୁକ୍ରମିକ ଭାବରେ ପକ୍କା କରିନେବାକୁ ପ୍ରୟାସ ବି କରନ୍ତି । ଏହାର ଖାସା ଉଦାହରଣ କେବଳ ଭାରତରେ ମିଳି-ପାରିବ । କ୍ଷମତା, ଶାସନକଳ, ଚୌକି, ସବୁ ଯେମିତି ସେମାନଙ୍କର ପୈତୃକ

ସମ୍ପତ୍ତି ? ସାଧାରଣ ଲୋକେ ଭୋକ ଓପାସରେ ମରନ୍ତୁ, ଫୁଟ୍‌ପାଥରେ ଗଡ଼ନ୍ତୁ ସେଥିପ୍ରତି ନେତା ମାନଙ୍କର ଆଦୌ ଭ୍ରୁକ୍ଷେପ କରିବାର ନାହିଁ । କାରଣ ସେମାନେ ଜନସାଧାରଣଙ୍କୁ ନିରକ୍ଷର, ଅସଭ୍ୟ, ଅଜ୍ଞ କରି ରଖିବା ପାଇଁ ସବୁପ୍ରକାର ଚକ୍ରାନ୍ତ କରନ୍ତି ।

ର୍‍ୟାଲି କରିବା ଏକ ସାଧାରଣ ବଡ଼ିମା ପ୍ରଦର୍ଶନର ଦୃଷ୍ଟାନ୍ତ ବନି-ଯାଇଛି । କେଉଁ ନେତା କେଉଁଠି ର୍‍ୟାଲି କରି କେତେ ଲୋକ ରୁଣ୍ଡେଇ ଠୁଳ କରିପାରନ୍ତି । ସେଥିରେ ତାଙ୍କର ଲୋକପ୍ରିୟତା ମପାଯାଏ । ର୍‍ୟାଲିର ଆୟୋଜନ କରି ଶାସନ କଳକୁ ଚ୍ୟାଲେଞ୍ଜ କରିବା ବିରୋଧୀ ଦଳ ନେତାଙ୍କର ଏକ ଫ୍ୟାଶନ୍ । ବେଳେ ବେଳେ ଶାସନ ଦଳ ମଧ୍ୟ ନିଜର ସୁଶାସନ ଓ ଜନପ୍ରିୟତା ପ୍ରଦର୍ଶନ କରିବା ପାଇଁ ବିରାଟ ବିରାଟ ର୍‍ୟାଲିର ଆୟୋଜନ କରନ୍ତି । ର୍‍ୟାଲି ପାଇଁ ଭାରତରେ ଲୋକଙ୍କର ଅଭାବ ନାହିଁ । ସେମାନେ ଗଣ୍ଡାଏ ଖାଇବା ପାଇଁ, ଗାଡ଼ି ମୋଟରରେ ବିନା ଭଡ଼ାରେ ଯାତ୍ରା କରିବା ପାଇଁ କିଛି ପକେଟ ଖର୍ଚ୍ଚ ପାଇବା ପାଇଁ ବ୍ୟାକୁଳ ହୋଇପଡ଼ନ୍ତି । ନେତାମାନେ ଟେମ୍ପୋ, ଟ୍ରକ, ବସ, ଟ୍ରେକର, ଟ୍ରେନରେ ବ୍ୟବସ୍ଥା କରି ଗାଁ ଗହଳର ଲୋକଙ୍କୁ ଆଣି ରାଜଧାନୀ ହେଉ ବା କୌଣସି ସହରରେ ହେଉ ର୍‍ୟାଲି କରନ୍ତି । ଲୋକେ ରାଜନୀତି କ'ଣ ବୁଝନ୍ତି ନାହିଁ । କେବଳ ଶୁଆ ଘୋଷିବା ପରି ଜିନ୍ଦାବାଦ୍ ଧ୍ୱନି ଦେଇ ହାତ ଟେକି ଦେଇ ଘରକୁ ଫେରନ୍ତି । ପୁଣି ଅନ୍ୟ ଦଳବାଲା ର୍‍ୟାଲି କଲେ ସେଠି ଯାଇ ସାମିଲ୍ ହୋଇଯାଆନ୍ତି ।

ନେତାମାନେ କ୍ଷମତା ପାଇଁ ଏତେ ପାଗଳ ଯେ କହିବାର ନାହିଁ । କାରଣ କ୍ଷମତା ନପାଇଲେ ସେମାନେ ରିଲକ୍ସ କରିବେ କିପରି ? କ୍ଷମତା ପାଇଁ ସବୁ ନିଷ୍ଠା, ତ୍ୟାଗ, ନ୍ୟାୟ ନୀତିକୁ ଜଳାଞ୍ଜଳି ଦେଇ ଶତ୍ରୁକୁ ମଧ୍ୟ କୋଳେଇ ନେଇପାରନ୍ତି । ଅବଶ୍ୟ କ୍ଷମତା ପାଇଗଲା ମାତ୍ରେ ନିଜ ବେଇମାନୀର ପ୍ରମାଣ ଦେଇଥାନ୍ତି । ଏଇ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଭାରତୀୟ ରାଜ-ନୀତିରେ ରୁଲ-ର୍‍ୟାଲି-ରିଲକ୍ସ ଏକ ପ୍ରଭାବଶାଳୀ ଫର୍ମୁଲା ।

ସତରେ ଆମ ଦେଶର ଅବସ୍ଥା ଯାହା ହେଲାଣି, ଆମ ନେତାମାନେ ଚାହିଁଲେ କ'ଣ ସୁଧୁରି ଯାଇ ପାରନ୍ତା ନାହିଁ ? ସବୁ ସମସ୍ୟାର ସମାଧାନ ପାଇଁ ସବୁ ଦଳର ନେତାମାନେ ହାତ ମିଳାଇ ସର୍ବସମ୍ମତ ନିଷ୍ପତି ନେଲେ କ୍ଷତି କ'ଣ ହୁଅନ୍ତା ??



# ନେତାଙ୍କ ଭାଷଣ

ବାବୁ ନିଲଠା ଦାସଙ୍କ ଭଳି ଆଉ ଜଣେ ନେତା ସମଗ୍ର ଭାରତରେ ଥିବେ କି ନା ସନ୍ଦେହ ହୁଏ । କୋଉ ଗୁଣରେ ତାଙ୍କ ସହିତ କିଏ ସରି ହେବ ? ତାଙ୍କ ନାମ କାହିଁକି ନିଲଠା ଦାସ ହେଲ, ଏହା ଗଭୀର ଅନୁଶୀଳନ ଓ ଗବେଷଣାର ପ୍ରସଙ୍ଗ । କେହି କେହି ତାଙ୍କୁ ନିଲଜ, ନିକମା, ବେହ୍ୟା ଅଥବା ଅଲଜୁକ ଦାସ ବୋଲି ମଧ କହନ୍ତି । ଲଜ ସରମ କିଛି ତାଙ୍କର ନାହିଁ । ଯିଏ ଯାହା କହିଲେ କାନରେ ପୂରନ୍ତି ନାହିଁ । ନିଜର ସ୍ୱାର୍ଥ ହାସଲ ପାଇଁ ସଦାତତ୍ପର ଥାଆନ୍ତି ।

ନିର୍ବାଚନ ବେଳ ଆସିଗଲେ ବାବୁଙ୍କ ଚେହେରରେ ଅନେକ ପରିବର୍ତ୍ତନ ଆସିଯାଏ । ଓଠରେ ମୁଚୁକନ୍ଦି ହସ ଉକୁଟେଇ ଜନତାଙ୍କୁ କୋଳେଇ ନିଅନ୍ତି । ଯାହାକୁ ଯୋଉଠି ଯୋଉ ପରିବେଶରେ ଦେଖନ୍ତି ସେଇଠି କୁଣ୍ଢେଇ ପକାଇ ଭାଇଲୋ, ବୋପାଲୋ, ଦାଦାଲୋ, ମଉସାଲୋ କହି ଭଲମନ୍ଦ ପଚ୍ଚରନ୍ତି । ଝିଅ ବୋହୂଙ୍କ ପିଠି ଥାପୁଡ଼େଇ ଦେଇ କାହାକୁ ମା, କାହାକୁ ମାଇଁ, କାହାକୁ ମାଉସୀ ଅବା କାହାକୁ ଝିଅ, ଭଉଣୀ ବୋଲି କେତେ ଆଦର କରନ୍ତି । ସେମାନଙ୍କ ଅଭାବ, ଅସୁବିଧା କଥା ପଚ୍ଚରନ୍ତି । ଇହା କରିଦେବି, ତାହା କରି-ଦେବି ବୋଲି ପ୍ରତିଶ୍ରୁତି ଦିଅନ୍ତି । ଦଳୀୟ ହାଓ୍ୱାରେ ହେଉ ବା ଦଳବଦଳ କରି ନବକଳେବର ଧାରଣ କରିଥିବା ଦୃଷ୍ଟିରୁ ହେଉ ବାବୁ ନିର୍ବାଚନରେ ନିଶ୍ଚିତ ଜିତନ୍ତି । କଳେ ବଳେ କଉଶଳେ ଅବା ମହାପ୍ରସାଦ ଦେଇ ଯେମିତି ହେଉ ସେ କ୍ଷମତାର ଚଉକିଟେ ହାତେଇ ନିଅନ୍ତି । ତା ଉପରେ ଆରାମରେ ବସିଯାଇ ପୃଥୁଳ ଉଦର ପରେ ହସ୍ତ ସଞ୍ଚାଳନ କରନ୍ତି । ମନେ ମନେ କହନ୍ତି "ପାଞ୍ଚବର୍ଷ ପାଇଁ ଚିନ୍ତା ଗଲ" ତାପରେ କ'ଣ ହେବ ଦେଖିବା ।

କ୍ଷମତା ପାଇଗଲା ପରେ ବାବୁ ରାଜଧାନୀରେ ଲାଖିହୋଇ ରହିଯାଆନ୍ତି । ନିର୍ବାଚନ ମଣ୍ଡଳୀକୁ ଆସିପାରନ୍ତି ନାହିଁ । ପଚ୍ଚାରିଲେ କହନ୍ତି ସେ କ'ଣ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ନେତା ? ସେ ପରା ସମଗ୍ର ରାଜ୍ୟର ଜନତାଙ୍କର ହାନିଲାଭ

ବୁଝିବା ପାଇଁ ଚଉକିରେ ବସିଛନ୍ତି । ନିଜର ଚେଲାଗୁମୁଣ୍ଡାଙ୍କୁ ଲଗାଇ ସବୁ-କ୍ଷେତ୍ରରେ ମୁଣ୍ଡ ପୂରାନ୍ତି । ନାରୀଧର୍ଷଣ ଠାରୁ ଆରମ୍ଭ କରି ଚୋରି, ହତ୍ୟା, ସାଂପ୍ରଦାୟିକତା, ଗୁଣ୍ଡାଗର୍ଦ୍ଦୀ, ଅର୍ଥ ଆତ୍ମସାତ, ଦଳବଦଳ ଆଦି ସବୁଥିରେ ଧୂରନ୍ଧର ସେ । ତାଙ୍କ ପାଖ ଲୋକଙ୍କ କଥା ନ କହିବା ଭଲ । ସେମାନେ ତାଙ୍କ ଠାରୁ ବଳିଯାଆନ୍ତି ବେଳେବେଳେ । କାରଣ ବାବୁଙ୍କ ଅଭୟ ବାହୁଛାୟା ତଳେ ସେମାନେ ଶକ୍ତ ଅପରାଧକୁ ସାଧାରଣ ଦୁର୍ଘଟଣାରେ ପରିଣତ କରି ପାରନ୍ତି ।

ଅଞ୍ଚଳ ସାରାରେ ଯୋଉଠି ଯେତେବେଳେ ସଭାସମିତି ହୁଏ ସେଥିରେ ବାବୁଙ୍କ ନାମ ଆଗ ଧାଡ଼ିରେ ଥାଏ । ଏମିତି କୌଣସି ସଂସ୍ଥା ନାହିଁ ଯୋଉଥିରେ ବାବୁ କର୍ମକର୍ତ୍ତା ନାହାନ୍ତି । ବାବୁଙ୍କ ଭାଷଣ କିନ୍ତୁ ସବୁଠାରୁ ନିଆରା । ସେ ଗାନ୍ଧୀ ମହାତ୍ମାଙ୍କର ପ୍ରକୃତ ଚେଲା । ସତ୍ୟର ଅପଳାପ କରନ୍ତି ନାହିଁ । ଥରେ ଯାହା କହିଥାନ୍ତି ସେଇ କଥାରେ ଅବିଚଳ ରହନ୍ତି । ବାରମ୍ବାର ନିଜର କଥା ବଦଳାନ୍ତି ନାହିଁ । ସଭା ସମିତିରେ ଭାଷଣ ଦେଲାବେଳେ ସେ କହନ୍ତି, "ମାନ୍ୟବର ସଭାପତି ମହୋଦୟେଷୁ, ମଞ୍ଚାସୀନ ଅତିଥିଗଣ, ଏବଂ ମୋର ଅତି ଆପଣାର ମା' ମାଉସୀ, ଭାଇ, ଭଉଣୀ, ବାପା, ଦାଦା ତଥା ପୁଅଝିଅମାନେ !

ମୋତେ କିଛି କହିବାକୁ ସୁଯୋଗ ଦେଇଥିବାରୁ କର୍ମକର୍ତ୍ତା, ଆୟୋଜକ ମାନଙ୍କୁ ଅଶେଷ ଧନ୍ୟବାଦ । କିନ୍ତୁ କ'ଣ କହିବି ? କାହାକୁ କହିବି ? କୋଉଠୁ ଆରମ୍ଭ କରିବି ? କୋଉଠି ଶେଷ କରିବି ? ମନକୁ ଅନେକ କଥା ଆସୁଛି । ମୁଁ ଯାହାବା କହିଥାନ୍ତି ସେସବୁ ମୋର ପୂର୍ବବକ୍ତାଗଣ ଆପଣମାନଙ୍କୁ କହି ସାରିଲେଣି । ମୁଁ ପୁଣି ସେଇ କଥା କହି ଆପଣ ମାନଙ୍କୁ ବିରକ୍ତ କରିବା ଉଚିତ ମଣୁନି । ବରଂ ସେମାନେ ଯାହା କହିଗଲେ ଆପଣମାନେ ସେକଥା ମାନନ୍ତୁ, ସେଇମିତି ଚଳନ୍ତୁ, ତାହାଲେ ମୁଁ ଖୁସି ହେବି । ଆଉ ଅଧିକ ନକହି ଏତିକିରେ ଶେଷ କରୁଛି ମୋର ବକ୍ତବ୍ୟ ।"

ଘନଘନ କରତାଳି ଧ୍ୱନିରେ ବାବୁ ବେଶ୍ ଫୁଲି ଉଠନ୍ତି । ରେକର୍ଡ଼ ବଜାଇଲା ଭଳି ବାବୁ ଏଇ ଗୋଟିଏ କଥା ହିଁ ସବୁ ସଭା ସମିତିରେ ଭାଷଣ ଦେଲାବେଳେ କହିଥାନ୍ତି । ଯଦି କେହି ତାଙ୍କର ଭାଷଣ ଚାରି ପାଞ୍ଚ ଥର ଶୁଣନ୍ତି ତେବେ ଆପେ ଆପେ ମୁଖସ୍ଥ ହୋଇଯିବ । ବାବୁଙ୍କୁ ଯଦି ଆଗୁଆ କିଛି କହିବାକୁ ଅନୁରୋଧ କରାଯାଏ ତେବେ ସେ କିଛି ବାହାନା କରି ପ୍ରଥମେ ଅନ୍ୟମାନଙ୍କୁ କହିବାକୁ ସୁଯୋଗ ଦେବାକୁ ନିର୍ଦ୍ଦେଶ ଦିଅନ୍ତି । କହନ୍ତି, "ଚିନ୍ତିନିଆଁ ତାହିଁକି ? ଆମେତ ଏଇ ଅଞ୍ଚଳର ଲୋକ । ଏଇଠିକାର ଜନପ୍ରତିନିଧି । ସବୁଦିନେ

କହି ଆସୁଛନ୍ତେ । ସେମାନେ ବାହାରୁ ଆସିଛନ୍ତି । ବିଶିଷ୍ଟ ବ୍ୟକ୍ତି । ନିମନ୍ତ୍ରିତ ଅତିଥି । ସେମାନଙ୍କୁ ଆଗ କହିବାକୁ ଦିଅ । ଏଥିରେ ଆମର ଗୌରବ ବଢ଼ିବ ।''

ନିଲଠା ଦାସଙ୍କ ପ୍ରତିଦ୍ୱନ୍ଦୀ ବାଇଝାଲିଆ ମହାନ୍ତି । ଦୁଇଜଣଙ୍କର ଘୋଡ଼ା ମଇଁଷୀ ସମ୍ପର୍କ । ଏଇ କିଛିଦିନ ତଳେ ବାଇଝାଲିଆ ଦଳବଦଳ କରି ନିଲଠାଙ୍କ ଦଳରେ ଯୋଗ ଦେଇଥିଲେ ମଧ୍ଯ ପୂର୍ବ ଶତ୍ରୁତା ଭୁଲିପାରି ନାହାଁନ୍ତି । ସେ ଗୁରୁ ନିଲଠାଙ୍କୁ ପାନେ ଦେବା ପାଇଁ ଚିନ୍ତା କଲେ । ବିକଳାଙ୍ଗ ଥଇଥାନ ଦାବୀ କରି ଏକ ଶୋଭାଯାତ୍ରା କରାଯିବା ପରେ ସାଧାରଣସଭା ଅନୁଷ୍ଠିତ ହେଲା । ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ଜନସାଧାରଣ, ବକ୍ତାମାନେ ଯୋଗଦେଲେ । ବିକଳାଙ୍ଗ ଥଇଥାନ ଆନ୍ଦୋଳନର ସଭାପତି ନିଜେ ବାବୁ ନିଲଠା ଦାସ । ଆନ୍ଦୋଳନର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେବା ପାଇଁ ତାଙ୍କୁ ପ୍ରଥମେ ଅନୁରୋଧ କରାଗଲା ।

ବାବୁ ମାଇକ୍ରୋଫୋନ ପାଖକୁ ଆସି ଗଳା ସଫା କରି ତାଙ୍କର ଚିରଚରିତ ଢଙ୍ଗରେ ଆରମ୍ଭ କଲେ, ''ମାନ୍ୟବର ସଭାପତି ମହୋଦୟେଷୁ··· ··· ···ଏତିକିରେ ଶେଷ କରୁଛି ମୋର ବକ୍ତବ୍ୟ ।'' ସେଇ ପୁରୁଣା ରେକର୍ଡ ବାଜିଗଲା । ଲୋକେ ହତବାକ୍ । ମଞ୍ଚାସୀନ ନେତାଗଣ ଆଶ୍ଚର୍ଯ୍ୟ । ତାଳିର ବି ମରୁଡ଼ି । କେହି ଜଣେ ହେଲେ ତାଳି ବଜେଇଲେ ନାହିଁ । ବାବୁ ଅପମାନିତ ବୋଧ କଲେ । ସମସ୍ତେ ନୀରବ । ବାବୁ ଚାରିଆଡ଼କୁ ନଜର ପକାଇଲେ । ବାବୁ ବାଇଝାଲିଆ ପାଖକୁ ଆସି କହିଲେ ''ଆଜ୍ଞା ! ପୁରୁଣା ରେକର୍ଡ ଆଉ ବଜେଇଲେ ଚଳିବନି । ଆପଣଙ୍କ ଆଗରୁ କେହି ଜଣେ ହେଲେ କହିନାହାଁନ୍ତି, ଆପଣ ପରା ପ୍ରଥମ ବ୍ୟକ୍ତି । ଅଥଚ··· ··· ···'' ବାବୁ କିଛି ନକହି ଚୁପଚାପ ସେଠାରୁ ଖସିଗଲେ । ମନେ ମନେ କହୁଥାନ୍ତି ''ଶଳା ବାଇଝାଲିଆ ମୋ ସୁମର ପଦାରେ ପକାଇ ଦେଲା ।''



# ନାରଦଙ୍କ ଭାରତ ଭ୍ରମଣ ରିପୋର୍ଟ

ଅଗଷ୍ଟ ପନ୍ଦର ତାରିଖରେ ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ ଭାରତର ମହାମହିମ ପ୍ରଧାନମନ୍ତ୍ରୀ ରାଜଧାନୀ ଦିଲ୍ଲୀର ଲାଲକିଲ୍ଲା ମଥାନରେ ଜାତୀୟ ପତାକା ଉତ୍ତୋଳନ କରି ଦେଶର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଏକ ଲମ୍ବାଚଉଡ଼ା ଭାଷଣ ଦେଲେ । ଏଇ ଭାଷଣର ସ୍ୱର ଶବ୍ଦ ତରଙ୍ଗରେ ଆନ୍ଦୋଳିତ ହୋଇ କାଶ୍ମୀର ଠାରୁ କୁମାରୀକା ଏବଂ ବଙ୍ଗୋପସାଗର ଉପକୂଳରୁ ଆରବ ସାଗର ଉପକୂଳ ତଥା ପାକିସ୍ଥାନ ସୀମାଯାଏ ସବୁରି କାନରେ ବାଜିଗଲା । ଭାରତ ଭଳି ବିଶ୍ୱର ସର୍ବବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରର ଶକ୍ତିଶାଳୀ ପ୍ରଧାନମନ୍ତ୍ରୀ ହେବା ସହଜ କଥା ନୁହେଁ । ଏଣୁ ନୂତନ ପ୍ରଧାନମନ୍ତ୍ରୀ ଜୀବନରେ ପ୍ରଥମଥର ପାଇଁ ଦେଶର ସ୍ୱାଧୀନତା ଦିବସ ପାଳନ କରୁଥିବାରୁ ନିଜକୁ ଭାଗ୍ୟବାନ ମଣି ମନେ ମନେ ଉତ୍‌ଫୁଲ୍ଲିତ ହୋଇ ଦେଶବାସୀଙ୍କୁ ଅନେକ କଥା ଶୁଣାଇଲେ । ପରେ ହୁଏତ ଏ ସୁଯୋଗ ଆଉ ମିଳିବ କି ନାହିଁ କିଏ ଜାଣେ ? ଦେଶରେ ରାଜନୈତିକ ଅସ୍ଥିରତା ଲାଗିରହିଛି । ପ୍ରବଳ ପରାକ୍ରମୀ ତଥା ଦୀର୍ଘ ଚାଳିଶ ବର୍ଷ ଧରି ଶାସନ କରି ଆସୁଥିବା କଂଗ୍ରେସଦଳ ପରାଜିତ ହୋଇଛି । ସାଂପ୍ରଦାୟିକତା ବାଦୀ ଆଖ୍ୟା ଦିଆଯାଇଥିବା ଅନ୍ୟତମ ଦଳ ବି. ଜେ. ପି. କ୍ଷମତା ଅକ୍ତିଆର କରିବାକୁ ତତ୍ପର ହୋଇ ଉଠିବା ସମୟରେ ସୃଷ୍ଟି ହୋଇଛି ତେରଦଳିଆ ମେଣ୍ଟ । ନେତୃତ୍ୱ କନ୍ଦଳ ଉଚ୍ଚଟରୁ ଉଚ୍ଚଟତର ହେବାରୁ ଶେଷରେ ହାତୀ ତାଙ୍କରି ମୁଣ୍ଡରେ ସୁନାକଳସରୁ ଜଳ ଢାଳିଛି । ବି. ଜେ. ପି.କୁ କ୍ଷମତା ବଳୟରୁ ଦୂରେଇ ରଖିବା ପାଇଁ କଂଗ୍ରେସ ସମର୍ଥନରେ ତେରଦଳିଆ ମେଣ୍ଟର ନେତାମାନେ ତାଙ୍କୁ ପ୍ରଧାନମନ୍ତ୍ରୀ ପଦରେ ବରଣ କରିଛନ୍ତି । ନ ହେଲେ ସେ କିଏ ? ଦିଲ୍ଲୀ କୋଉଠି ? ଏ ସୁବର୍ଣ୍ଣ ସୁଯୋଗ ହାତଛଡ଼ା କରିବାର ନୁହେଁ ।

ଏଇ ମଉକାରେ ଦେଶବାସୀଙ୍କ ମନ ନେଇ ପାରିଲେ ତାଙ୍କୁ ଆଉ କେହି ଗାଦୀରୁ ହଟାଇ ପାରିବେ ନାହିଁ । ଏଣୁ ସାତଦିନ ସାତରାତି ସତର ଘଣ୍ଟା ସତାବନ ମିନିଟ୍ ସତେଇଶ ସେକେଣ୍ଡ ଧରି ବହୁ ପରିଶ୍ରମ କରି ଉଦରସ୍ଥ,

ଥଣ୍ଡସ୍ଥ କରିଥିବା ବହୁମୂଲ୍ୟ ଭାଷଣକୁ ଗଳା ଝାଡ଼ି ଷଣ୍ଡାଟେକି ଅତି ସୁନ୍ଦର ମନମୋହିନୀ ଶୈଳୀରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଛାଡ଼ିଦେଲେ ।

ତାଙ୍କ ମହାର୍ଘ ଭାଷଣର ସାରମର୍ମ ଏଇପରି,—"ହେ ମୋର ପ୍ରିୟ ଭାରତବାସୀ ! ... ମୁଁ ଗାନ୍ଧୀ, ନେହେରୁ, ଇନ୍ଦିରା, ରାଜୀବଙ୍କ ନାମରେ ଶପଥ ନେଉଛି ଆପଣ ମାନଙ୍କର ସେବାରେ ଜୀବନକୁ ଉତ୍ସର୍ଗ କରିବି । ଆସନ୍ତା ଦୁଇ ହଜାର ମସିହା ସୁଦ୍ଧା ଭାରତକୁ ଏଇ ବିଶ୍ୱ ବ୍ରହ୍ମାଣ୍ଡର ସବୁଠାରୁ ଶକ୍ତିଶାଳୀ, ସୁସମୃଦ୍ଧ, ଆତ୍ମନିର୍ଭରଶୀଳ ଦେଶରେ ପରିଣତ କରିବି । ଫୁଟ୍‌ପାଥ୍‌ରେ କେହି ଗଡ଼ିବେନି, ଅନାହାରରେ କେହି ମରିବେନି, ଦୁଃଖ ଯନ୍ତ୍ରଣାରେ କେହି ସଡ଼ିବେନି । ସମସ୍ତେ ସୁଖ ଶାନ୍ତି-ଆରାମରେ ବସବାସ କରିବେ । କାହାରି କିଛି ଅଭାବ ଅସୁବିଧା ରହିବନି । ପ୍ରତି କ୍ଷେତ୍ରରେ ପ୍ରଗତି ସାଧିତ ହେବ । ଦେଶରେ ରାମରାଜ୍ୟ ସ୍ଥାପିତ ହେବ । ପୃଥିବୀର ସବୁ ଦେଶ ଭାରତ ଆଗରେ ମୁଣ୍ଡ ନୁଆଁଇବେ । ଭାରତର ନୀତି ଆଦର୍ଶକୁ ଅନୁସରଣ କରିବେ । ପ୍ରତ୍ୟେକ ଅଞ୍ଚଳରେ ସୃଷ୍ଟି କରାଯିବ ସ୍ୱର୍ଗର ନନ୍ଦନକାନନ । ଏ ଦେଶର ପ୍ରତିଟି ଘର ହେବ ଇନ୍ଦ୍ରଭୁବନ । ସ୍ୱର୍ଗପୁରୀର ସମସ୍ତ ସୁବିଧା ସୁଯୋଗ ଏଇ ମର୍ତ୍ତ୍ୟ ଭୂମିରେ ଲୋକଙ୍କୁ ଯୋଗାଇ ଦିଆଯିବ । କେହି ଆଉ ସ୍ୱର୍ଗକୁ ଯିବା ପାଇଁ ଲାଳାୟିତ ହେବେନି । ବୈଜ୍ଞାନିକ ଗବେଷଣା ମାଧ୍ୟମରେ ଏକ ନୂଆ ଫର୍ମୁଲା ଆବିଷ୍କାର କରାଯିବ । ଫଳରେ ଆମ ଦେଶର ଲୋକେ ଚିରଅମର ହୋଇ ରହିପାରିବେ । ମୁଁ ଅଧିକ କିଛି କହିବାକୁ ଚାହୁଁ ନାହିଁ । ତେବେ ମୋ ହାତ ମୁଠାକୁ ଟାଣ କର ଆମ ତେର ଦଳିଆ ମିଳିତ ସାମ୍ମୁଖ୍ୟକୁ ବାରବାର ଭୋଟ ଦେଇ ବିପୁଳ ସଂଖ୍ୟାରେ ଜୟଯୁକ୍ତ କରାଅ । ତାପରେ ଅପେକ୍ଷା କର ଏବଂ ଦେଖ ଆମେ କ'ଣ କରିପାରୁଛୁ । ଖୁବ୍ ଶୀଘ୍ର କାଶ୍ମୀର ସମସ୍ୟାର ସମାଧାନ କରାଯିବ । ଆମ ଦେଶରେ ଅଶାନ୍ତି, ଅସ୍ଥିରତା ସୃଷ୍ଟି କରି ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ ଚଳାଇବାକୁ ଚେଷ୍ଟା କଲେ ପାକିସ୍ଥାନକୁ ଉଚିତ ଶିକ୍ଷା ଦିଆଯିବ । ବନ୍ଦେ ଭାରତ ଜନନୀ । ଜୟହିନ୍ଦ୍ ।"

ଭାରତ ପ୍ରଧାନମନ୍ତ୍ରୀଙ୍କର ଏ ଭାଷଣ ସମଗ୍ର ବିଶ୍ୱରେ ଚମକ ସୃଷ୍ଟି କଲା । ପାକିସ୍ଥାନର ନେତାମାନେ ରାଗରେ ରକ୍ତ ଗୁଞ୍ଜ ଗ୍ରୋବାଇଲେ । ନିଜକୁ ସର୍ବଶକ୍ତିମାନ ଭାବୁଥିବା ଆମେରିକା ଭାରତର ଏତାଦୃଶ ଘୋଷଣାକୁ ସୁସ୍ଥ ମନରେ ଗ୍ରହଣ କଲା ନାହିଁ । ଅନ୍ୟ ବହୁ ଦେଶ ମଧ୍ୟ ସମାଲୋଚନା କଲେ । ଧର୍ମପୁରୀ ଯମାଳୟ, ବୈକୁଣ୍ଠ ଭବନ, ଇନ୍ଦ୍ରପୁରୀରେ ଚହଳ ସୃଷ୍ଟି ହେଲା । ସ୍ୱୟଂ

ଯମରାଜ ଅହେତୁକ ଆଶଙ୍କାର ପ୍ରମାଦ ଗଣିଲେ । ସତରେ ଯଦି ଏକଥା ସମ୍ଭବ ହୁଏ ତେବେ ତାଙ୍କ ପଦ ରହିବ କିପରି ? ସାଧାରଣତଃ ଭାରତବର୍ଷରୁ ସର୍ବାଧିକ ପାପୀ ପ୍ରତିବର୍ଷ ଯମପୁରକୁ ଯାଇଥାନ୍ତି । ଯଦି ସମସ୍ତେ ଅମର ହୋଇଯିବେ ତେବେତ କଥା ସରିଲା । କିଛିବର୍ଷ ମଧ୍ୟରେ ଯମଲୋକରେ ମରୁଡ଼ି ଦେଖା-ଦେବ ।

ଦେବରାଜ ଇନ୍ଦ୍ର ନିଜର ପାରିଷଦମାନଙ୍କୁ ଡକାଇ ବିଚାର ବିମର୍ଶ ଆରମ୍ଭ କଲେ । ସବୁ ଦେବାଦେବୀଙ୍କୁ ଆମନ୍ତ୍ରିତ କରାଯାଇ ଏକ ଜରୁରୀ ବୈଠକର ଆୟୋଜନ କରାଗଲା । ନିର୍ଦ୍ଦିଷ୍ଟ ତିଥିରେ ସମସ୍ତେ ସ୍ୱସ୍ୱ ବାହନରେ ବିଜେକରି ଉପସ୍ଥିତ ହେଲେ ।

ଆବାହକ ଦେବରାଜ ଇନ୍ଦ୍ର ପ୍ରାଥମିକ ସୂଚନା ଦେବାକୁ ଯାଇ ସବୁକଥା ବର୍ଣ୍ଣନା କଲେ । ଭାରତର ପ୍ରଧାନମନ୍ତ୍ରୀ ଭାଷଣରେ ଯାହା କହିଲେ ଯଦି ତାହା କାର୍ଯ୍ୟକାରୀ ହୁଏ ତେବେତ କେହି ଆଉ ସ୍ୱର୍ଗ ପାଇଁ ଲାଳାୟିତ ହେବେ ନାହିଁ । ମର୍ତ୍ତ୍ୟରେ ଯଦି ସ୍ୱର୍ଗ ସୁଖ ମିଳେ, ଇନ୍ଦ୍ରପୁରୀର ବିଳାସ-ବ୍ୟସନ ଉପଭୋଗ କରି ହୁଏ, ପୁଣି ସମସ୍ତେ ଅମର ହୋଇଯାଆନ୍ତି ତେବେ ଲୋକେ ଆଉ ଦେବାଦେବୀଙ୍କୁ ମାନିବେନି । ଯେତ କମ୍ ଅପମାନର କଥା ନୁହେଁ । ଏ ସମ୍ପର୍କରେ ବିଭିନ୍ନ ପ୍ରସ୍ତାବ ଆଗତ ହେଲା । ସର୍ବସମ୍ମତି କ୍ରମେ ସ୍ଥିର କରାଗଲା ଯେ ଦେବଲୋକ ଗୋଇନ୍ଦା ବିଭାଗର ମୁଖ୍ୟ ଏମ. ନାରଦଙ୍କୁ ଭାରତକୁ ପଠାଯିବ । ସେ ଭାରତର ସବୁ ଅଞ୍ଚଳ ଗସ୍ତକରି କନ୍‌ଫିଡ଼େନ୍‌ସିଆଲ ରିପୋର୍ଟ ପେଶ୍ କରିବା ପରେ ଉପଯୁକ୍ତ ପଦକ୍ଷେପ ନିଆଯିବ ।

ପରିଶେଷରେ ଏମ. ନାରଦ ତାଙ୍କର ଦ୍ରୁତଗାମୀ ଢେଙ୍କି ଜେଟ୍‌ରେ ଭାରତ ଅଭିମୁଖେ ଯାତ୍ରାରମ୍ଭ କଲେ । ରାଜଧାନୀ ଦିଲ୍ଲୀ ମହାନଗରୀରେ ପହଞ୍ଚିଲା ବେଳକୁ ବେଳ ଗଡ଼ି ଯାଇଥିଲା । ସେ ଖୁବ୍ କ୍ଲାନ୍ତ ହୋଇ ପଡ଼ିଥିଲେ । କ'ଣ କରିବେ ? କୌଣସି ହୋଟେଲରେ ରୁମ୍‌ଟେ ବୁକ୍ କରି ଫ୍ରେଶ୍ ହୋଇ ସାମାନ୍ୟ ଚା' ଜଳଖିଆ ଉଦରସ୍ଥ ନ କଲେ ଭଲ ଲାଗିବନି । ସେ ଆଗରୁ ଜାଣିଛନ୍ତି ଭାରତୀୟ ହୋଟେଲମାନଙ୍କରେ ନାନାପ୍ରକାର ଦୁଇନମ୍ବରି କାରବାର ଚାଲେ । ବିଶେଷ କରି ବଡ଼ ବଡ଼ ଫାଇଭଷ୍ଟାର ହୋଟେଲ ମାନଙ୍କରେ ଏସବୁ ସାଧାରଣ ଘଟଣା । ଜଣେ ରାସ୍ତାକଡ଼ ପାନ ଦୋକାନୀକୁ ପଚାରି ସାଧାରଣ ହୋଟେଲରେ ରୁମଟେ ନେଲେ । ଜିନିଷପତ୍ର ଥୋଇ ଧୋଇଧାଇ ଗାଧୋଇ ପଡ଼ିଲେ । ତାପରେ ହାଲ୍‌କା ଟ୍ରାଉଜର ପଞ୍ଜାବୀଟେ ପିନ୍ଧି ଟିଫିନ୍ ପାଇଁ ରାସ୍ତାକୁ ବାହାରି ପଡ଼ିଲେ ।

"ଆଜ୍ଞା ! ସେଠାକୁ ଯାଆନ୍ତୁନି । ତନ୍ଦୁର ଚୁଲାରେ ସେକି ଦେବେଟି ?"

ନାରଦ ବାବୁ ବୁଲିପଡ଼ି ଦେଖିଲେ ରିକ୍ସାବାଲାଟେ ତାଙ୍କୁଇ ଲକ୍ଷ୍ୟକରି କହୁଛି । ତା'ଠୁ ଜାଣିବାକୁ ପାଇଲେ ଯେ, କିଛିଦିନ ତଳେ ସେଠାରେ ନୈନା ସାହାଣୀଙ୍କୁ ତନ୍ଦୁର ଚୁଲାରେ ଜଳାଇ ମାରି ଦିଆଯାଇଥିଲା । ସେ ତାକୁ ବହେ ଧନ୍ୟବାଦ୍ ଦେଇ ତା'ରି ରିକ୍ସାରେ ବସି ଗୋଟିଏ ରେସ୍ତୋରାଁକୁ ଯାଇ ଜଳଯୋଗ କଲେ । ସେ ରିକ୍ସାବାଲାଟି ନିରୀହ ଏବଂ ଭଦ୍ର ପ୍ରକୃତିର ହୋଇ-ଥିବାରୁ ସିନା ତାଙ୍କ ଜୀବନ ବଞ୍ଚିଗଲା । ତାନ୍ତଡ଼ା ସେ ଗୋପନରେ ତଥ୍ୟ ସଂଗ୍ରହ କରିବାକୁ ଆସିଛନ୍ତି । ନିଜ ଡ଼େର୍ଙ୍କ ଜେଟ୍‌ରେ ତ ସାଧାରଣ ଗସ୍ତ କରି ପାରିବେନି । ରିକ୍ସାବାଲାଙ୍କୁ ସବୁ ଖବର ଜଣାଥାଏ । ଏଣୁ ତାକୁ ବିଶ୍ୱସ୍ତ ଗାଇଡ୍ ଭାବରେ ଗ୍ରହଣ କରିନେଲେ । ସେ ଦିଲ୍ଲୀରେ ରହିଥିବା ପର୍ଯ୍ୟନ୍ତ ରିକ୍ସା ବାଲା ପ୍ରତିଦିନ ଆସି ତାଙ୍କୁ ନେବା ଆଣିବା କରିବ । ତାର ଉପଯୁକ୍ତ ପ୍ରାପ୍ୟ ମଧ୍ୟ ପାଇବ । ରିକ୍ସାବାଲା ଖୁସ୍ ହୋଇ ଜୁହାର ପକେଇ ଚାଲିଗଲା ।

ନାରଦବାବୁ ହୋଟେଲରେ ବିଶ୍ରାମ ନେଲେ । ମନଟା କିନ୍ତୁ ଭଲ ଲାଗୁ ନଥାଏ । ରାତିଟା ଯାକ ଏକା ଏକା କ'ଣ କରିବେ ? ହୋଟେଲ ପାଖକୁ ଲାଗି ସିନେମା ହଲଟେ ଥାଏ । ଭାବିଲେ କିଛି ସମୟ ସିନେମା ଦେଖିଲେ କ୍ଷତି କ'ଣ ? ଯାଇ ଦେଖିଲେ ସିନେମା ହଲ ସାମନା ଏକଦମ୍ ଲୋକାରଣ୍ୟ । ପିମ୍ପୁଡ଼ି ପଶିବାକୁ ବାଟ ନାହିଁ । ଟିକେଟ୍ ସବୁ ବ୍ଲାକ୍‌ରେ ବିକ୍ରି ହେଉଛି । ଦର୍ଶକ ଦର୍ଶିକାଙ୍କ ମଧ୍ୟରେ ଯୁବକ ଯୁବତୀଙ୍କ ସଂଖ୍ୟା ସର୍ବାଧିକ । ଦି' ଚାରିଟା ପଗଡ଼ି ବାଲା ସେଠାରେ ଉପସ୍ଥିତ ଥାଇ ମଧ ବ୍ଳାକ ହେଉଥାଏ । ସେମାନେ ତାଙ୍କ ବଟି ଧରି ଚୁପ୍ ଚାପ୍ ଛିଡ଼ାହୋଇ ରଙ୍ଗ ଦେଖୁଥାନ୍ତି । ଏଇ ସମୟରେ ହୋଟେଲ ବୟଟେ ତାଙ୍କୁ ଦେଖି କହିଲା "ଆଜ୍ଞା ! ସିନେମା ଯିବେକି ? ଚିନ୍ତା କରନ୍ତୁନି । ମୁଁ ଆପଣଙ୍କୁ ଟିକେଟ୍ ଦେବି ।" ଅନ୍ୟମାନଙ୍କ ପାଇଁ ପଚାଶ, ଆପଣ ଆମ ହୋଟେଲରେ ଅଛନ୍ତି ଯେତେବେଳେ ଚାଳିଶ ଟଙ୍କା ଦିଅନ୍ତୁ ।

ହୋଟେଲ ବୟ ପାଖରୁ ବ୍ଲାକ୍‌ରେ ଟିକେଟ୍ ଖଣ୍ଡେ ନେଇ ନାରଦ ବାବୁ ହଲ ଭିତରେ ପଶିବାକୁ ଦରଜା ପାଖରେ ପହଞ୍ଚିଲେ । ସେଠି ସ୍ୱାତିମତ ଠେଲା ପେଲା ଲାଗିଥାଏ । ସେ ଗୋଟିଏ କଡ଼କୁ ନୀରବରେ ଛିଡ଼ା ହେଲେ । ସମସ୍ତେ ପଶିସାରିଲା ପରେ ସେ ଯାଇ ଦେଖିଲେ ଫିଲିମି ଆରମ୍ଭ ହୋଇଗଲାଣି । ତାଙ୍କୁ ଜଣେ ଠେଲି ଠେଲି ନେଇ ଗୋଟିଏ ମଝାମଝି ସିଟ୍‌ରେ ବସାଇ ଦେଲା । ପ୍ରଥମରୁ ଫିଲିମିଟା ଦେଖି ହେଲାନି । ଏବେ ରମଜ ଲାଗିଯାଇଛି । ହଲ କମ୍ପେଇ ସ୍ୱସ୍ୱଷା ବାଜୁଛି । ଦଳେ ଟୋକାଟୋକି ନାଚିବା ଆରମ୍ଭ କରି ଦେଲେଣି ।

ପରଦା ଉପରେ ଦୁଇତୃତୀୟାଂଶ ଲଙ୍ଗଳା ଅବସ୍ଥାରେ ହିରୋଇନ୍ ସର୍ବାଙ୍ଗ ଦୋହଲାଇ କୋକିଳ କଣ୍ଠରେ କହୁଥାଏ "ଯାତି ହୁଁ ମେଁ... । ଜୋକର କଟିଂ ଛାରେ ତାକୁ ଶୂନ୍ୟରେ ଟେକିଧରି କହୁଥାଏ 'ଜଲ୍‌ଦି ହେ କ୍ୟା"...... ନାରଦ ତ ବ୍ରହ୍ମଚାରୀ ଲୋକ । ତାଙ୍କୁ ବା ଏସବୁ ଭଲ ଲାଗନ୍ତା କୁଆଡ଼ୁ ? ନିଜର ଦୁଇପାଖକୁ ଲକ୍ଷ୍ୟକଲେ । ତାଙ୍କ ବାମରେ ଜଣେ ଆଉ ଡାହାଣ ପାଖରେ ଜଣେ ଅତ୍ୟାଧୁନିକା ମେନକା ବସିଛନ୍ତି । ସେଠୁ ଉଠି ଆସିବା ମାତ୍ରେ ସେମାନେ ଦୁଇପଟୁ ତାଙ୍କ ହାତଧରି ବସାଇ ଦେଲେ । ଜଣେ କହିଲା ହାଏ...ହାଏ... ମେରା ଦିଲ୍‌ବର । ଅନ୍ୟ ଜଣକ କହିଲା ମାଇଁ ଡିଅର ରୋମିଓ । ନାରଦ ଦେଖିଲେ ସେଠୁ ପଳାଇ ନଗଲେ ଅବସ୍ଥା ଅସମ୍ଭାଳ ହୋଇପଡ଼ିବ । ବାଧ୍ୟ ହୋଇ ସାନ୍‌ପାଶ୍ ସଙ୍କେତ ଦେଖାଇ ଯଥା କଥା ଭିଡ଼ ଠେଲି ସିଧା ହୋଟେଲକୁ ପଳାଇ ଆସିଲେ । ମିଲ୍ ଖାଇନେଇ କିଛି ସମୟ ବିଶ୍ରାମ କଲେ । ତାପରେ ନୋଟ ବୁକ୍ ବାହାର କରି ତାଙ୍କ ଭାରତ ଗସ୍ତର ଯୋଜନା ପ୍ରସ୍ତୁତ କଲେ । ଅର୍ଥାତ୍ କୋଉଦିନ କୋଉ ଅଞ୍ଚଳକୁ ଯିବେ । କୋଉଠି କେତେଦିନ ରହିବେ । କେବେ ସବୁ ବିବରଣୀ ସଂଗ୍ରହ କରି ପ୍ରତ୍ୟାବର୍ତ୍ତନ କରିବେ ଆଦି ସବୁକଥା ଆପାତତଃ ଠିକ୍ କରିନେଲେ ।

ତହିଁ ପରଦିନ ନିର୍ଦ୍ଦିଷ୍ଟ ସମୟରେ ସେଇ ରିକ୍‌ସାବାଲା ଆସି ପହଞ୍ଚିଗଲା । ସେ ନାରଦଙ୍କୁ ନେଇ ଦିଲ୍ଲୀର ସଚିବାଳୟ ଏବଂ ପାର୍ଲ୍ୟାମେଣ୍ଟ ତଥା ରାଷ୍ଟ୍ରପତି ଭବନ ବୁଲାଇ ଆଣିଲା । ପଦ୍ମଫୁଲିଆ ସାହେବଙ୍କ ସାହେବୀ ଢାଞ୍ଚା ଦେଖିବା ସଙ୍ଗେ ସଙ୍ଗେ ନାରଦ ରତିପତି ମଦନଙ୍କ ଦୁଃଖ କାହାଣୀ ଶୁଣି ଯେତେବେଳେ ଯାଇ ପାର୍ଲ୍ୟାମେଣ୍ଟ ହଲ ପାଖରେ ପହଞ୍ଚିଲେ ତାଙ୍କୁ ଦଳେ କମାଣ୍ଡୋ ଶିକାରୀ କୁକୁର ଭଳି ଚାରିପଟୁ ଘେରିଗଲେ । ତାଙ୍କ ଆଇଡେଣ୍ଟିଟି ମାଗିଲେ । ନାରଦ ଭାରି ଚତୁର । ଆଗରୁ ସେ ଜଣେ ସାମ୍ବାଦିକ ବୋଲି ପରିଚୟ ପତ୍ରଟେ ଯୋଗାଡ଼ କରିଥିଲେ । ତାହା ଦେଖାଇ ଭିତରେ ପଶି ଯାହା ଦେଖିଲେ ତାଜୁବ ହୋଇଗଲେ । ପାର୍ଲ୍ୟାମେଣ୍ଟ ଭାରତର କେନ୍ଦ୍ରଶାସନର ନାଭିକେନ୍ଦ୍ର । ସବୁ ଅଞ୍ଚଳର ଜନ ପ୍ରତିନିଧି ସେଇଠି ଠୁଳ । ଦେଶର ସର୍ବୋଚ୍ଚ ଆଇନ ଗଢ଼ା କାରଖାନା ସେଇଟା । ଅଥଚ...ସେଠି ଘମାଘୋଟ ଲଢ଼େଇ ଚାଲିଛି । କିଏ ମାଇକ୍ରୋ ଫୋନ ଭାଙ୍ଗିଲାଣିତ କିଏ କାହା କଲର ଧରିଲାଣି । ଦଳେ ଚପଲ ଉଠାଉଠି ତ ଦଳେ ମୁଥ ମଗମରି । କିଏ ଚେୟାର ଉଠାଇ ଫୋପାଡ଼ୁଛିତ କିଏ କଞ୍ଚା ଦୋ ଅକ୍ଷରୀ ଶୁଦ୍ଧ ଭାଷାରେ ସ୍ତୁତିଗାନ କରୁଛି । ନାରଦ ପ୍ରାଣ ବିକଳରେ ଗୋଟିଏ କଣରେ ଛପି ରହିଲେ । ଦେଶର ଜନ

ପ୍ରତିନିଧିମାନେ ଗାଁ ଗହଳର ମେଞ୍ଚଡ଼ ମୁଖର୍ଁ ଟୋକାଙ୍କ ଭଳି ଝଗଡ଼ା, ବାଡ଼ିଆ ପିଟା ଲଗୁଥିବାର ମନୋରମ ଦୃଶ୍ୟକୁ ଭାରତବାସୀ ଦୂରଦର୍ଶନ ମାଧ୍ୟମରେ ଅତି ଆଗ୍ରହ ସହକାରେ ଦେଖୁଥାନ୍ତି । ହାଏ...ହାଏ ଏଇଥିରେ ପୁଣି ଭାରତର ପ୍ରଧାନମନ୍ତ୍ରୀ ବାହାସ୍ଫୋଟ ମାରୁଛନ୍ତି ।

ସେଠାରୁ ଫେରି ନାରଦ ସ୍ଥିରକଲେ ଯେ ଭୂସ୍ୱର୍ଗ କଶ୍ମୀର, ଗ୍ର' ନଗରୀ ଆସାମ, ଦାଦାର ରାଜ୍ୟ କଲିକତା, ପଗଡ଼ିଓ୍ୱାଡ଼ା ପଞ୍ଜାବ, ମାୟା ପ୍ରଦେଶ, ଅପସରୀଙ୍କ ଖଣି ବମ୍ବେ, ଲୁଙ୍ଗି ନଗରୀ ଚେନ୍ନେଇ, ଫୁଲେଇଙ୍କ ଖାଦାନ୍ ଆନ୍ଧ୍ର, କଙ୍କଡ଼ା ରାଜ୍ୟ ଓଡ଼ିଶା ଗସ୍ତ କରି ମୋଟାମୋଟି ଭାବରେ ସମଗ୍ର ଭାରତ ସମ୍ବାଦ ସଂଗ୍ରହ କରିପାରିବେ । ସେଇ ଅନୁସାରେ ଡେର୍କି ଜେଟ୍‌କୁ ପ୍ରସ୍ତୁତ କଲେ ।

ନାରଦ କାଶ୍ମୀରର ରାଜଧାନୀ ଶ୍ରୀନଗରରେ ଅବତରଣ କରିବା ମାତ୍ରେ ତାଙ୍କୁ ଭାରତୀୟ ସିକ୍ୟୁରିଟି ଫୋର୍ସ ଘେରିଗଲେ । ସନ୍ତ୍ରାସବାଦୀ ବୋଲି ସନ୍ଦେହ କଲେ । ସେ ଜଣେ ଟୁରିଷ୍ଟ ବୋଲି ପରିଚୟ ପତ୍ର ଦେଖାଇ ସେମାନଙ୍କ କବଳରୁ ମୁକ୍ତି ପାଇଲେ । ଗୁଲ, ଗୁଲସନ୍, ଗୁଲଫାମର ଅନୁଭୂତି ହାସଲ କଲେ । ଘରିଆଡ଼େ ସନ୍ତ୍ରାସବାଦୀଙ୍କ ଗୁପ୍ତ ଆଡ଼୍ଡା । ସାଧାରଣ ଲୋକେ ହନ୍ତସନ୍ତ । ବୋମା ବିସ୍ଫୋରଣ, ଧର୍ଷଣ, ଲୁଣ୍ଠନ, ହତ୍ୟା, ଆତ୍ମସମର୍ପଣର ଲୀଳା ଦେଖିଲେ । ପାକିସ୍ଥାନୀ ହାଓ୍ୱା ବହୁଥିବାର ଅନୁଭବ କରି ସେଠାରୁ ଫେରି ସୁଶ୍ରୀ ମାୟାବତୀଙ୍କ ମାୟା ସାମ୍ରାଜ୍ୟ ଉତ୍ତର ପ୍ରଦେଶରେ ପହଞ୍ଚିଲେ । ପୁରୁଷୋତ୍ତମ ଶ୍ରୀରାମଙ୍କ ଜନ୍ମପୀଠ ଦର୍ଶନ କରିବାକୁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ଆଲ୍ଲାମିଆଁଙ୍କ ଚେଲାମାନେ ସେଥିରେ ବାଧା ଦେଲେ । ସେଠାରେ ରାଜନୈତିକ ଅସ୍ଥିରତା, ଉତ୍ତରାଖଣ୍ଡ ଆନ୍ଦୋଳନ, ମୁଲାୟମଙ୍କ ଇଲମ ତିଆରି କାରଖାନା ସଂପର୍କରେ ରିପୋର୍ଟ ସଂଗ୍ରହ କରି ସ୍ୱର୍ଣ୍ଣମନ୍ଦିର ଅଭିମୁଖେ ଯାତ୍ରା କଲେ । ସେଠାରେ ମଧ୍ୟ ସେଇ ଅବସ୍ଥା । ମନ୍ଦିର ଭିତରକୁ ପ୍ରବେଶ କରିପାରିଲେ ନାହିଁ । ସବୁଠି ପଗ୍‌ଡ଼ିଓ୍ୱାଲାଙ୍କ ସନ୍ତ୍ରାସବାଦର ସ୍ୱର ଶୁଣି ସିଧା ସଳଖ ଗ୍ର' ନଗରୀ ଆସାମରେ ଯାଇ ପହଞ୍ଚିଲେ । ସେଠାରେ ବୋଡ଼ୋ ଉଗ୍ରପନ୍ଥୀ, ବିଚ୍ଛିନ୍ନତାବାଦ, ଅପହରଣ ରାଜନୀତି ସଂପର୍କରେ ଅନେକ କଥା ଜାଣିଲେ । ତାପରେ ଦାଦାଙ୍କ ରାଜ୍ୟରେ ପହଞ୍ଚି ସ୍ୱସ୍ତିର ନିଃଶ୍ୱାସ ମାରିଲେ । ପ୍ରବଳ ପରାକ୍ରମୀ ଅପ୍ରତିଦ୍ୱନ୍ଦୀ ଦାଦା ଜ୍ୟୋତିବସୁଙ୍କ ହାଲଚାଲ, କାଲକା କାଟାର ରହସ୍ୟ ପଚାରି ବୁଝିଲେ । ଟଲିଉଡ୍ ମହିମା ଆଖିରେ ଦେଖିଲେ । ସୋନାଗାଛିର ସୁନ୍ଦରୀମାନଙ୍କ କବଳରୁ ବହୁ କଷ୍ଟରେ ନିଜକୁ ମୁକୁଳାଇ କଙ୍କଡ଼ାଙ୍କ ସାମ୍ରାଜ୍ୟ ଓଡ଼ିଶାରେ ଆସି ଅବତରଣ କଲେ । କରିତ୍‌କର୍ମା ମୁଖ୍ୟମନ୍ତ୍ରୀ ଜାନକୀ ବାବୁ,

ଚିରବସନ୍ତର ପ୍ରତୀକ ବସନ୍ତ ବାବୁ, ନନ୍ଦିନୀ ନାନୀ, ଚଉଦୁଆର କୃଷ୍ଣ କାହ୍ନା, ଜୟନ୍ତୀନାନୀଙ୍କ ଗୁମର ଜାଣିଲେ ।

ଘେବନିଶରର ମ୍ୟାସେଜ୍ ପାରଲେର ସମ୍ପର୍କରେ ଜାଣିବାକୁ ଯେମିତି ପଶି ଯାଇଛନ୍ତି ତାଙ୍କ ହୋସ ଉଡ଼ିଗଲା । ଅଧାନଙ୍ଗୁଳୀ ସୁନ୍ଦରୀମାନେ ତାଙ୍କୁ ଘେରିଯାଇ ଜବର୍ଦସ୍ତ "ଦେଦେ ପ୍ୟାର୍ ଦେ" ଢଙ୍ଗରେ ଲୀଳା ଆରମ୍ଭ କଲା- ବେଳକୁ ପୋଲିସ ଚଢ଼ାଉ କଲା । ସେମାନଙ୍କୁ ହାତଗୁଞ୍ଜା ଦେଇ ନୀଳାଚଳ ବିହାରୀଙ୍କ ଲୀଳା ଦର୍ଶନ କଲେ । ଗୁରିଆଡ଼େ ଇସ୍ପାତ କାରଖାନା ପ୍ରତିଷ୍ଠା କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ସବୁ ପ୍ରଗତି କେବଳ କଥାରେ କଥାରେ ପ୍ରତିଶ୍ରୁତିରେ ହେଉଥିବା ଜାଣିଲେ । ଓଡ଼ିଆଙ୍କ ଭିତରେ ପ୍ରବଳ ଗୋଡ଼ ଟଣାଟଣି ସ୍ୱଭାବ ଥିବାରୁ ଏହାକୁ କଙ୍କଡ଼ା ରାଜ୍ୟ କୁହାଯାଇଥିବାର ସାର୍ଥକତା ଅନୁଭବ କଲେ ।

ତାପରେ ଫୁଲେଇଙ୍କ ରାଜ୍ୟରେ ପ୍ରବେଶ କଲେ । ଯୋଉଠି ଦେଖିଲେ ଦଳଦଳ ସୁନ୍ଦରୀ ସୁହାସିନୀମାନେ ମୁଣ୍ଡରେ ଫୁଲତୋଡ଼ା ଖୋସି "ପ୍ୟାର କିୟା ତୋ ଡରନା କ୍ୟା" ଗାଇ ଡ୍ୟାନ୍ସ କରୁଥାନ୍ତି । ଚନ୍ଦ୍ରବାବୁ ନାଇଡୁଙ୍କ ଦାଡ଼ୀର ମହିମା ଶୁଣି ଚକିତ ହେଲେ । ସେଠାରୁ ଲୁଙ୍ଗି ନଗରୀ ଚେନ୍ନେଇ ଅଭିମୁଖେ ଯାତ୍ରା କଲେ । ଏକଦା ପ୍ରବଳ କ୍ଷମତାଶାଳିନୀ, ମନମୋହିନୀ ଚିତ୍ରତାରକା ତଥା ଚେନ୍ନେଇ ସୁନ୍ଦରୀ ସୁଶ୍ରୀ ଜୟାଙ୍କ ମାୟାମହଲ କଥାତ ଆଗରୁ ଶୁଣିଥିଲେ । ସି. ବି. ଆଇ. କବ୍‌ଜାରେ ଥିବା ତାଙ୍କର ହଜାର ହଜାର ଶାଢ଼ୀ, ଗହଣା, ଯୋତା, ସୁନା, ରୁପାର ମହାର୍ଘ ପ୍ରଦର୍ଶନୀ ଦେଖିଲେ । ଲୁଙ୍ଗି ସମ୍ରାଟ କରୁଣା- ନିଧିଙ୍କ କରୁଣା ଲାଭ କଲେ । ତାପରେ ବାଘେଲଙ୍କ ଆଖଡ଼ା ଦେଖି ଅପସରୀଙ୍କ ନଗରୀ ମୁମ୍ବାଇରେ ପହଞ୍ଚିଲେ । ସେଠାରେ ତାଙ୍କୁ ଦାଉଦ ଇବ୍ରାହିମର ଗୁପ୍ତଚର ଭାବି ହଲପଟା କଲେ । ସେ କିନ୍ତୁ ଶିବଙ୍କ ସେନା ଓ ନନ୍ଦୀ ଥାକ୍‌ରେଙ୍କ କୃପାରୁ ମୁକ୍ତି ପାଇଗଲେ ।

ବଲିଉଡ଼ ସମାଗ୍ଭର ଶୁଣିଲେ । ସେଠାରୁ ସିଧା ପ୍ରତ୍ୟାବର୍ତ୍ତନ କରିବାକୁ ମନସ୍ଥ କରିଥିଲେ ମଧ ଦୂରଦର୍ଶନରୁ ଦେଖିଲେ ଯେ ତେଣେ ଦିଲ୍ଲୀରେ ପ୍ରବଳ ହଟ୍ଟଗୋଳ ସୃଷ୍ଟି ହୋଇଛି । ସମଗ୍ର ବିଶ୍ୱକୁ ଚମକେଇ ଦେଇଥିବା ଦେରଦଛିଆ ମୁଣ୍ଡି ସର୍ଦାର ଗୌଡ଼ଙ୍କର ଗୋଡ଼ ତଳୁ ମାଟି ଖସି ଗଲାଣି । ପାର୍ଲ୍ୟାମେଣ୍ଟରେ ମାନ୍ୟବର ଜନପ୍ରତିନିଧିମାନଙ୍କ ଆକ୍ରମଣ-ପ୍ରତିଆକ୍ରମଣ, ମାରପିଟ୍, ମାଇକ୍ରୋ- ଫୋନ୍ ଛଡ଼ାଛଡ଼ି ଦେଖି ପୁଣି ଦିଲ୍ଲୀ ଅଭିମୁଖେ ଜେଟ୍ ମୁହାଁଇଲେ । ସବୁ ଗୋଳମାଳର ଅବସାନ ହେଲା । ଇନ୍ଦର ପୁତର (କୁମାର)ଙ୍କ ଗୁଜର ହୁଆ କଲା

ଔର ଆଜ୍‌କା କରିସ୍ମା ଦେଖିଲେ । କେଶରୀଙ୍କ ଠେକ୍‌ଗରେ ଷୋହଳ ଦଳର କାପ୍ତାନ୍ ସାଜିଥିବା ଇନ୍ଦର ପୁତର ଯେ ଆଉ ଛକ୍‌କା ମାରି ପାରିବେନି ଏକଥା ଅନୁଭବ କଲେ । ଯାହା ହେଉ ଦୁଃଶ୍ଚିନ୍ତା ଗଲା । ଷୋହଳ ଦଳର ଫାଟ ବୁଜିବାରେ, କେଶରୀଙ୍କ କେଶ ସାଉଁଳିବାରେ, ଦାଦାଙ୍କ ମନ କିଣିବାରେ ତାଙ୍କର ସବୁ ସମୟ ଯିବ । ଭରତ କେବଳ ସମସ୍ୟାର ଦେଶ ହୋଇ ରହି ଯିବ । ଦୁଇ ହଜାର କ'ଣ ତିନି ହଜାର ମସିହା ପର୍ଯ୍ୟନ୍ତ ବିଶ୍ୱର ଶ୍ରେଷ୍ଠ ଶକ୍ତି ହୋଇ ପାରିବନି ।

ଏମ. ନାରଦ ଦେବଲୋକରେ ପହଞ୍ଚି ନିଜର ଭରତ ଭ୍ରମଣ ରିପୋର୍ଟ ପେଶ୍ କଲେ । ଇନ୍ଦ୍ରାଦି ଦେବଗଣ, ଯମରାଜ ଆନନ୍ଦରେ ଉଲ୍ଲସିତ ହୋଇ ପଡ଼ିଲେ । ସ୍ୱାଧୀନତାର ସ୍ୱର୍ଣ୍ଣଜୟନ୍ତୀ ପାଳୁଥିବା ଭରତର ଅଧିକାଂଶ ଅଞ୍ଚଳର ଲୋକେ ଯେ ସ୍ୱାଧୀନତା କ'ଣ ଜାଣି ନାହାନ୍ତି, ଏହାର ସ୍ୱାଦ ଚାଖି ନାହାଁନ୍ତି । ଯାହାକିଛି ସମ୍ଭବ ହୋଇଛି କେବଳ କାଗଜ କଲମରେ ଏକଥା ଶୁଣି ସ୍ୱୟଂ ଇନ୍ଦ୍ର ନାରଦଙ୍କୁ ପ୍ରଶଂସା କଲେ । ସର୍ବସମ୍ମତି କ୍ରମେ ତାଙ୍କୁ ପୁରସ୍କୃତ ମଧ୍ୟ କରା-ଗଲା । ମାତ୍ର ଭିତିରି ଖବର ଅନୁସାରେ ନାରଦ କାଳେ ଗଜାବ ଭୂତ ପୂରେଇ ଗୁଜରାଲ ସରକାରକୁ ମଧ୍ୟ ଭାଙ୍ଗି ଦେଲେ ।



# ଓମ୍ ଶ୍ରୀ ଶ୍ରୀ ଗ୍ରମ୍‌ଗ୍ରାୟ ନମଃ

ଓମ୍ ଶ୍ରୀ ଶ୍ରୀ ଅଷ୍ଟୋତ୍ତର ଶତଶ୍ରୀ, ଶ୍ରୀଯୁକ୍ତମ୍ ଶ୍ରୀମଦ୍ ଶୀଳଭଦ୍ରାୟ, ଅସାଧ ସାଧନାୟ ଶ୍ରୀ ଶ୍ରୀ ଗ୍ରମ୍‌ଗ୍ରାୟ ନମଃ । ହେ ଗ୍ରମ୍‌ଗ୍ର ମହାପ୍ରଭୁ । ତବ ଶ୍ରୀଚରଣ କମଳ ପାଖୁଡ଼ାରେ କୋଟିଏ ପ୍ରଣାମ ।

ସୁଧୀ ପାଠକ ପାଠିକାଏ ! ଆପଣମାନେ ଗଭୀର ଉତ୍କଣ୍ଠା ପ୍ରକାଶ କରି ପାରନ୍ତି, ଗ୍ରମଗ୍ର ବାବୁଙ୍କ ନାମର ପ୍ରାରମ୍ଭରେ ଶ୍ରୀ ଶ୍ରୀ ଆଦି ଉପାଧି କାହିଁକି ଯୁକ୍ତ କରାଗଲା ? ମାନେ, କଥା କ'ଣକି, ଆପଣମାନେ ପ୍ରାୟ ସମସ୍ତେ ଗ୍ରମଗ୍ର ବାବୁଙ୍କୁ ଚିହ୍ନିଥିବେ, ଜାଣିଥିବେ, ମିଶିଥିବେ, କଥା ହୋଇଥିବେ ତାଙ୍କ ସହିତ । ତାଙ୍କ ପ୍ରେମରେ ହେଉ ବା ଜାଲରେ ହେଉ ପଡ଼ିଥିବେ । ନଚେତ ନିଜେ ଗ୍ରମଗ୍ର ଯୁକ୍ତ ହୋଇଥିବେ । ସେ ତ ଆଉ ଏମିତି ସେମିତି ସର୍ବସାଧାରଣ ନୁହଁନ୍ତି, ବିଶିଷ୍ଟ ଭି. ଭି. ଆଇ. ପି । ତାଙ୍କରି ମାୟାରେ ସବୁ । ତାଙ୍କୁ ଅସାଧାରଣ ରୂପରେ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବା କ'ଣ ଅପରାଧ ?

ଆମ ଦେଶରେ ଭାରତ ରତ୍ନ, ପଦ୍ମଭୂଷଣ, ପଦ୍ମବିଭୂଷଣ, ଅର୍ଜୁନ, ପଦ୍ମଶ୍ରୀ, ପରମବୀର ଚକ୍ର ଆଦି ଉପାଧି ପ୍ରଦାନ କରାଯିବା କଥା ଆପଣମାନେ ଜାଣନ୍ତି । ସେମାନଙ୍କର ଚରିତ୍ର, କାର୍ଯ୍ୟାବଳୀ, ଗୁଣ ଗାରିମାର ତର୍ଜମା କରି ଗ୍ରମଗ୍ର ବାବୁଙ୍କର ବଳବୀର୍ଯ୍ୟ, ସ୍ଥିତି, ଜ୍ଞାନ ଗରିମା, ଠାଣିମାଣି, ଢଙ୍ଗ ବାଗ, ଚାଲିଚଳଣ, ଜୀବନଯାପନ, ସବୁକିଛିର ତୁଳନା କରି ଦି' ଚାରି ପେଗ୍ ଥଣ୍ଡା ବରଫ ଦିଆ ବିୟର ଗାର୍ଗଲିଂ କରି ଫାଇଭଷ୍ଟାର ହୋଟେଲର ଡନଲପ୍ ଉପରେ ଦି' ଚାରି ଘଣ୍ଟା ଲମ୍ବା ଘୁଙ୍ଗୁଡ଼ି ମାରି ତାପରେ ସ୍ଥିର ମସ୍ତିଷ୍କରେ ଚିନ୍ତା କରି କୁହନ୍ତୁ, ତାଙ୍କୁ ଛଦ୍ମ ଭୂଷଣ, ସଦ୍ମ ବିଭୂଷଣ, ଚତୁର ଶିରୋମଣି ଚଞ୍ଚୁ ଚୂଡ଼ାମଣି ସୃଷ୍ଟିରତ୍ନରେ ବିଭୂଷିତ କରାଯିବ ନା ଅନ୍ୟକିଛି ସ୍ପେଶାଲ ତାଙ୍କପାଇଁ ସୃଷ୍ଟି କରାଯିବ ? ସେ କେବଳ ଅପନ୍ତରା ଭାରତର ନୁହଁନ୍ତି, ସବୁ ଯୁଗରେ, ସବୁ କାଳରେ, ସବୁ ଦେଶରେ ବିରାଜମାନ । ସେ ଅମର, ଅବିନଶ୍ୱର, ତାଙ୍କ

ଉପରେ କେହି ନିର୍ଦ୍ଦିଷ୍ଟ ରୂପରେ ଅଧିକାର ସାବ୍ୟସ୍ତ କରିବା ସମ୍ଭବ ହୋଇନାହିଁ, ବରଂ ସେ ସବୁରି ଅକଲ ଗୁଡ଼୍ଡୁମ କରିବାକୁ ସକ୍ଷମ ହୋଇ ପାରିଛନ୍ତି ।

ଦୁଃଖ ଏବଂ ପରିତାପର ବିଷୟ ଯେ ଗ୍ରମଗ୍ର ବାବୁଙ୍କର ପ୍ରକୃତ ଜନ୍ମ ରହସ୍ୟ ଅଦ୍ୟାବଧି ଅନୁଦ୍‌ଘାଟିତ ହୋଇ ରହିଯାଇଛି । ସେ କେଉଁଠି, କେବେ, କେଉଁ ଲଗ୍ନରେ, କେଉଁ ତିଥିରେ, କେଉଁ ରାଶିରେ ଚନ୍ଦ୍ରରମଣ କରୁଥିବା ସମୟରେ କେଉଁ ଅବତାର ନେଇ ଆବିର୍ଭୂତ ହୋଇଥିଲେ ସେ ବିଷୟରେ ଅନେକ ପୌରାଣିକ, ସାମାଜିକ, ବୈଜ୍ଞାନିକ ଗବେଷଣା କରାଯାଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ହସ୍ତଗତ ହୋଇନାହିଁ । ସେ ସର୍ବଦା ସର୍ବବ୍ୟାପୀ, ସର୍ବରୂପୀ, ସର୍ବାକାର । ସ୍ୱର୍ଗରେ, ମର୍ତ୍ତ୍ୟରେ, ପାତାଳରେ, ପ୍ରେତଲୋକରେ, ଯମଦରବାରରେ ଯୋଉଠି ଖୋଜନ୍ତୁ, ଯୋଉ ରୂପରେ ହେଲେ ଦେଖା ହୋଇଯିବ । ଗୋଟିଏ ଅଙ୍ଗ ଅବୟବ ମାତ୍ର ଭିନ୍ନ ଭିନ୍ନ ଅବତାର । କେତେବେଳେ ନାରଦ, କେତେବେଳେ ବୟସ୍ୟ, ଗ୍ରଟୁକାର, ତୋଷାମଦିଆ, ଅର୍ଦ୍ଦଳି, ବୟ, ପାଖଲୋକ, ପି. ଏ , କୋର୍ଟ ଇନ୍‌ସ୍ପେକ୍ଟର ଅଥବା ଖୋଜା, ବାନ୍ଦା ରୂପରେ ଅବତୀର୍ଣ୍ଣ ହୋଇଥାନ୍ତି ।

ନଟନାଗର ଶ୍ରୀକୃଷ୍ଣଙ୍କ ବାଣୀ "ମଦ୍‌ଭକ୍ତ୍ୟା ଯତ୍ର ତିଷ୍ଠନ୍ତି" ନ୍ୟାୟରେ ଯୋଉଠି ବେଶୀ ପିଆପିଇ ଗ୍ଲେ, ଭୁରିଭୋଜନ ମିଳେ, ଅର୍ଥାତ୍ ବଡ଼ ବଡ଼ ପାର୍ଟି, ମିଟିଂ, ପ୍ଲାନିଂରେ ଗ୍ରମଗ୍ର ବାବୁ ସ୍ୱତଃ ବିଦ୍ୟମାନ ଥାଆନ୍ତି । ତା ବୋଲି ଆପଣ ତାଙ୍କୁ "ମଦ୍ୟପ" ବୋଲି ଭାବିନେବେନି । ସେ ମାନହାନୀ ସୁଟ୍ କରି ପାରନ୍ତି । ସ୍ୱର୍ଗର ଦେବତାମାନେ ସୋମରସ ପିଉଥିଲେ । ଆର୍ଯ୍ୟମାନେ ମଧ୍ୟ ଏଇ ମଦ ପିଇ ବେଦ ରଚନା କରିଥିଲେ । ଆଜିର ଅତ୍ୟାଧୁନିକ ସୁପର କମ୍ପ୍ୟୁଟର ଯୁଗରେ କିଏ ନ ପିଉଛି ? କୁଲି ଚପରାଶି, ଶ୍ରମିକ ମାଲିକ ଠାରୁ ନେତା ମନ୍ତ୍ରୀ, ଅଭିନେତା, ଅଭିନେତ୍ରୀ ଯାଏ ସମସ୍ତେ ଫରେନ୍‌ ଲିକର ହେଉ କି ମହୁଲି, ରାଉଳି, ହାଣ୍ଡିଆ (ଏ. ବି. ସି. ଡ୍ରିଙ୍କସ—ଆଦିବାସୀ କୋଲ୍‌ଡ଼ ଡ୍ରିଙ୍କ୍‌ସ୍) ପିଉଛନ୍ତି । ପାଣିନୀଙ୍କ ଅନୁସାରେ "ମତ୍—ପିଅ" ର ଅର୍ଥ ମଦ୍ୟପ । ଯିଏ ପିଇ ନପିଇବାର ଅଭିନୟ କରିପାରନ୍ତି, ସବୁ ଜାଣି କିଛି ନଜାଣିବାର ଛଳନା କରିପାରନ୍ତି, ତିଳକୁ ତାଳ, ଗଧକୁ ଷଣ୍ଢ, ଘୋଡ଼ାକୁ ବଳଦ, ମେଣ୍ଢାକୁ ଷଣ୍ଢ କହିପାରନ୍ତି । ହଁଜୀ ହଁଜୀ କରିପାରନ୍ତି, ସେ ହିଁ ଗ୍ରମଗ୍ର । ଏଇଠି ଗୋଟିଏ କଥା ଅବତାରଣା କରୁଛି, ଶୁଣନ୍ତୁ । ଆପଣମାନେବି ଅନେକ ନିଭେଇ ଥିବେ । ଜୀବନର ତଳିବାଟରୁ ଏମିତି କେତେ ସ୍କୁଡ୍ରି ସାଉଁଟି ଥିବେ ।

ହଁ, କଥା କ'ଣକି, ଥରେ ଏକ ଜରୁରୀ କାମରେ ମାନ୍ୟବର ମନ୍ତ୍ରୀଙ୍କୁ ଦେଖା କରିବାକୁ ଯାଇଥିଲି । ଆଗରୁ ସିନା ରଜା ମହାରଜାମାନେ ଥିଲେ, ଏ ଯୁଗରେ ମନ୍ତ୍ରୀ ହିଁ ସର୍ବେସର୍ବା । ତାଙ୍କରି ଦୟାରେ ସବୁ । ତାଙ୍କ କରୁଣା କଟାକ୍ଷ ପଡ଼ିଲେ ସବୁ ଅସମ୍ଭବ ସମ୍ଭବ ହୋଇପାରେ । ସେ ରଗିଲେ କିନ୍ତୁ ସର୍ବନାଶ । ଉଛନ୍ନ କରିଦେବେ । ମନ୍ତ୍ରୀଙ୍କ ବାସଭବନରେ ଯାଇ ଦେଖିଲି ଜଣେ ସୁଟେଡ଼ ବୁଟେଡ଼ ପରଚସ୍ମୁ ପରିହିତ ଅତ୍ୟାଧୁନିକ ଷ୍ଟାଇଲର ବ୍ୟକ୍ତି ସୋଫା ଉପରେ ଅଧାଶୁଆ ଅବସ୍ଥାରେ ଏକ ସେକ୍‌ସ ମ୍ୟାଗାଜିନ୍‌ରେ ଆଖି ପକାଉ ଥାଆନ୍ତି । ମନ୍ତ୍ରୀ ମହୋଦୟ ତାଙ୍କର ଜନୈକ ଇମୋଟେଡ଼ ବାନ୍ଧବୀଙ୍କ ସହିତ କ୍ଲବକୁ ଯାଇଥାନ୍ତି ଭରକ୍ରାନ୍ତ ମନକୁ ସାମାନ୍ୟ ହାଲ୍‌କା କରିବା ପାଇଁ । ଦ୍ୱିଧା-ସଙ୍କୋଚରେ ଲମ୍ବା ନମସ୍କାରଟେ ପକାଇଲି । ବାବୁ ଚିହିଁକି ଉଠିଲେ । ମ୍ୟାଗାଜିନଟାକୁ ରଖିଦେଲେ । ତାଙ୍କ ମୁଖତୂଣୀରରୁ ପ୍ରଶ୍ନବାଣଗୁଡ଼ିକ ଛିଟିକି ଆସି ମୋ ହୃଦୟରେ କଣ୍ଟାଭଳି ପୋଡ଼ି ହୋଇଗଲେ । "କୁଆଡ଼େ ଆସିଛନ୍ତି ? କାହିଁକି ଆସିଛନ୍ତି ? କୋଉଠୁ ଆସିଛନ୍ତି ? ମନ୍ତ୍ରୀ ଜାଣିଛନ୍ତି ନା ନୂଆ କରି ଆସିଛନ୍ତି ? କିଏ ପଠାଇଛନ୍ତି ନା ନିଜେ ମନକୁ ମନ ଧପାଲି ଆସିଛନ୍ତି ?

ଭାବୁଥିଲି ଶୁଣେଇ ଦେବି ଦି'ପଦ ମିଠାକଡ଼ା । ମାତ୍ର କ୍ରୋଧ ସମ୍ବରଣ କରି ଆବ୍ରାହମ ଲିଙ୍କନଙ୍କ କଥା ମାନି ଏକରୁ ଦଶ ଗଣି ମନକୁ ଲଗାମ ଦେଇ କହିଲି, "ଆଜ୍ଞା ! ମନ୍ତ୍ରୀ ମହୋଦୟ ମୋତେ ଆଜି ଏଇ ସମୟରେ, ଏଇ ବାସ-ଭବନରେ ସାକ୍ଷାତ କରିବାକୁ କହିଥିଲେ ।" ବାବୁଙ୍କର ମିଜାଜ୍ ବରଫ ପାଲଟି ଗଲା । ଦାନ୍ତ ନିଫିଡ଼ି ହଅଁଳ କରି କହିଲେ "କିଛି ଚିନ୍ତା ନାହିଁ । ମନ୍ତ୍ରୀ ନଥିଲେ ମୁଁ ଅଛି । ହେଃ......ହେଃ......ଆପଣମାନଙ୍କ ସେବା ପାଇଁତ ଆମେ ଏଭରେଡ଼ି (ଏଭର + ରେଡ଼ି) । ଆଚ୍ଛା ଆଗରୁ ଦର କଷାକଷି କିଛି ଛିଣ୍ଡିଛି ନା ସେ ବିଷୟରେ କିଛି ଆଲୋଚନା ହୋଇନି ? ଯାହା ଆଣିଛନ୍ତି ଦେଇ ଯାଆନ୍ତୁ, କ'ଣ କାମ କୁହନ୍ତୁ । ମୁଁ ମନ୍ତ୍ରୀ ଆସିବା ମାତ୍ରେ ଫାଇଲ ପୁଟ୍‌ଅପ୍ କରେଇ ଫାଇନାଲ କରିଦେବି । ଅବିଶ୍ୱାସ କରିବାର କିଛି ନାହିଁ । ମୁଁ ଯାହା କହିବି ମନ୍ତ୍ରୀ ତାହା କରିବାକୁ ବାଧ୍ୟ ହେବେ ।

ବୁଝିଲେ ପାଠକେ, ଯେ ସେଇ ସ୍ୱମଗ୍ନ ବାବୁଙ୍କର ଏକ ଅବତାର । ପି. ଏ. ଭାବରେ ପରିଚିତ । ଆଜ୍ଞା, ଏଇ ଆସୁଛି କହି ତାଙ୍କ କବଳରୁ ଖସି ଆସିଲି । ହଁ, ଏବେ ପ୍ରସଙ୍ଗ ଉପରକୁ ଆସନ୍ତୁ । ସ୍ୱମଗ୍ନ ବାବୁଙ୍କର ଗୁଣ, କର୍ମ, ବିଦ୍ୟା, ବୁଦ୍ଧି, ସ୍ୱରୂପ କାର୍ଯ୍ୟ ପରିସର ସମ୍ପର୍କରେ ଆଲୋଚନା କରିବା ।

ଶ୍ରୁତୋଽସି କୃତବିଦ୍ୟସି ଦର୍ଶନୀୟୋଽସି ପୁତ୍ରକଃ,
ଯତ୍ରକୁଳେ ତମ୍ପୁତର୍ନଂ କିବା ତତ୍ର ନଭବତେ ?

ଅର୍ଥାତ୍ ରାମରାମ ବାବୁ କରିତ୍ କର୍ମା, ଶୌର୍ଯ୍ୟ, ବୀର୍ଯ୍ୟେ ଗରୀୟାନ । ଦର୍ଶନୀୟ । ସେ ଯେଉଁ କୁଳରେ ଜାତ ସେ କୁଳରେ ସମସ୍ତେ ବିଜୟଶ୍ରୀ ବିମଣ୍ଡିତ ବୀର ପୁଙ୍ଗବ । ଏପରି କିଛି ନାହିଁ ଯାହା ତାଙ୍କ ଦ୍ୱାରା ସମ୍ଭବ ନୁହେଁ । ଅସମ୍ଭବକୁ ସମ୍ଭବ କରିବା ତାଙ୍କ ଧର୍ମ । "ଅହର୍ନିଶ ସେବାୟାମ" ତାଙ୍କର ମହନୀୟତା । "ଜୀ ହଜୁର, ଆଜ୍ଞା, ଜୀ ଜନାବ, ମିଃ ଲର୍ଡ଼ ! କୁହନ୍ତୁ କି ସେବା କରିପାରେ ?" ପ୍ରକୃତରେ ତାଙ୍କ ସେବା ମନୋଭାବର ପଟାନ୍ତର ନାହିଁ ।

"ଅୟଂ ନିଜ ପରୋବେତି ଗଣନା ଲଘୁଚେତଷାମ୍
ଉଦାର ରାମରାମ-ନାମ୍‌ତୁ ବସୁଧୈବ କୁଟୁମ୍ବକମ୍ ।"

ଇଏ ପର, ଇଏ ନିଜର ଏକଥା ଇତର ଲୋକମାନେ ଭାବନ୍ତି । ରାମରାମ ବାବୁ କିନ୍ତୁ ସମଗ୍ର ବିଶ୍ୱକୁ ନିଜ କୁଟୁମ୍ବ ବୋଲି ଗଣନା କରନ୍ତି । ତାଙ୍କ ପାଖରେ ନିଜ ପର ନାହିଁ । ସ୍ୱାର୍ଥ ପାଇଲେ ସେ ଶତ୍ରୁକୁ ମଧ୍ୟ କୋଳେଇ ନେଇ ଗାଲରେ ଚୁମା ବର୍ଷଣ କରିଦେବେ । "ତ୍ୱମେବ ମାତାଚ ପିତା ତ୍ୱମେବ, ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ" ରାମରାମ ବାବୁଙ୍କ ମୂଳମନ୍ତ୍ର ହିଁ ତାଙ୍କ ପାଇଁ ପିତା, ମାତା, ବନ୍ଧୁ, ସଖା, ସହୋଦର, ଆରାଧ୍ୟ ଦେବତା । ଆପଣ-ମାନେ କହିପାରନ୍ତି ତାଙ୍କର କ'ଣ ନିଜର ଜ୍ଞାତି, ପରିବାର କେହି ନାହାନ୍ତି ? ଆଜ୍ଞା ଯେ କି କଥା ? ବିଶ୍ୱର ସବୁ ରାମରାମ ତାଙ୍କର ବନ୍ଧୁ । "ସ୍ୱାର୍ଥ ଯୋଉଠି ମନଯୋଗ ସେଇଠି" ଅର୍ଥାତ୍ ସ୍ୱାର୍ଥ ନଥିଲେ ରାମରାମ ବାବୁଙ୍କ ତୁଣ୍ଡରୁ କଥା ପଦଟେ ବି ଶୁଣିବାକୁ ମିଳେନାହିଁ ।

"ଋଣଂ କୃତ୍ୱା ଘୃତମ୍ ପିବେତ୍
ଯାବତ୍ ଜୀବେତ୍ ସୁଖଂ ଜୀବେତ୍ ।"

କେହି କେହି ଋଣ କରି ଘିଅ ପିଇ ସୁଖରେ ରହିବାକୁ ପସନ୍ଦ କରନ୍ତି । ମାତ୍ର ଋଣ ନକରି ଘିଅ ପିଇବାର କାଇଦା କେବଳ ରାମରାମ ବାବୁଙ୍କୁ ଜଣା । ସେ ଅନ୍ୟ ପିଠିରେ ହାତ ବୁଲାଇ ନିଜର ଫାଇଦା ହାସଲ କରନ୍ତି ଅଥବା ଯାହାଙ୍କ ପାଇଁ କାମ କରନ୍ତି ତାଙ୍କରି ଧନରେ ମାଲମାଲ ହୁଅନ୍ତି । "ପର ଧନରେ ନର୍ସିଂଗା" ଉକ୍ତିଟି ତାଙ୍କ ପାଇଁ ପ୍ରଯୁଜ୍ୟ । ଶସ୍ତାରେ ଆଳକତରା ଗିଳି ପକାଇବା ତାଙ୍କର ଧର୍ମ । ତେବେ ଏ ଭେଜାଲ ଯୁଗରେ ଶୁଦ୍ଧ ଘିଅ ନମିଳିଲେ କ'ଣ ହେବ, ରାମରାମ ବାବୁ କିନ୍ତୁ ପାଣିରେ ସର ପକାଇ ଘିଅ ବାହାରୁ

କରିପାରନ୍ତି । ଶୁଦ୍ଧାଶୁଦ୍ଧ କିଛି ମାନନ୍ତି ନାହିଁ । ଯେତେବେଳେ ଯୋଉଠି ଯାହା ମିଳିଲା ତାକୁ ସାଦରେ ଗ୍ରହଣ କରନ୍ତି । କୌଣସି ଦ୍ରବ୍ୟ ପ୍ରତି ତାଙ୍କର ଅନାଦର ନାହିଁ ।

ଆଜିକାଲି ମନ୍ତ୍ରୀ, ନେତା, ଅଫିସର, ମିଲମାଲିକ, ଓକିଲ, ଠିକାଦାର, ଡାକ୍ତର ଆଦି ସମସ୍ତେ ଚମଚା ପରିବେଷ୍ଟିତ । ଚମଚା ବିନା ନିଜର ଗର୍ବ, ଆଭିଜାତ୍ୟ ପ୍ରଦର୍ଶନ କରିବା ସମ୍ଭବ ନୁହେଁ । ଏଣୁ ବୁଦ୍ଧିମାନ, ଚତୁର, ଶିକ୍ଷିତ ଚମଚାଟିଏ ଥିଲେ ଆଉ କିଛି ଚିନ୍ତା କରିବାର ନାହିଁ ।

"ବରଂ ଏକ ଚତୁରଃ ଚମଚା ନ ଚ ନିର୍ବୋଧ ଶତାନ୍ୟପି,
ଏକଶ୍ଚନ୍ଦ୍ର ତମୋହନ୍ତି ନ ଚ ତାରାଗଣୋଽପିଚ ।"

ଶତାଧିକ ନିର୍ବୋଧ ମୂର୍ଖ ଚମଚାମାନଙ୍କ ଅପେକ୍ଷା ଜଣେ ଚତୁର ଶିକ୍ଷିତ ଚମଚା ହିଁ ଉପଯୁକ୍ତ । ତାରାଗଣ ଅନ୍ଧକାର ଦୂର କରିପାରନ୍ତି ନାହିଁ ମାତ୍ର ଏକ ଚନ୍ଦ୍ର ସମଗ୍ର ବିଶ୍ୱକୁ ଆଲୋକିତ କରିପାରେ । ସେଇପରି ଉପଯୁକ୍ତ ଚମଚା ମାଧ୍ୟମରେ ସବୁ କାର୍ଯ୍ୟ ଅକ୍ଳେଶରେ ସାଧନ କରଯାଇପାରେ । ସବୁ ପ୍ରକାର ଫାଇଦା ହାସଲ କରଯାଇପାରେ । ସୂର୍ଯ୍ୟ ଉଦୟ ଓ ଅସ୍ତକାଳରେ ଏକରଙ୍ଗ ଧାରଣ କଲାପରି ଚମଚା ମଧ୍ୟ ସର୍ବଦା ଏକପ୍ରକାର ଆଚରଣ କରନ୍ତି । ଯାହା ପାଖରେ ଯେତେବେଳେ ଥା'ନ୍ତି ତାଙ୍କରି ଗୁଣ ଗାଆନ୍ତି ।

"ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ରାଷ୍ଟ୍ରବିପ୍ଳବେ,
ସଚିବାଳୟେ ପାର୍ଲ୍ୟାମେଣ୍ଟେ କୋର୍ଟେଷ୍ୱ ଚମଚା ଭବତି ବାନ୍ଧବଃ।"

ଉପଯୁକ୍ତ ଚମଚାର ପରିଚୟ ହେଉଛି ଯିଏ ଉତ୍ସବରେ, ବିଳାସ-ବ୍ୟସନରେ, ସଚିବାଳୟରେ, ପାର୍ଲ୍ୟାମେଣ୍ଟରେ କ୍ଷମତା ଥିବା ସମୟରେ ଏବଂ କ୍ଷମତା ଚ୍ୟୁତ ହୋଇ କୋର୍ଟକୁ ଟଣା ହେବା ସମୟରେ ମୁନିବଙ୍କ ସଙ୍ଗରେ ଏକମନ ଏକ ପ୍ରାଣ ହୋଇଥାଏ ।

ରକ୍ଷିତବ୍ୟୋ ଧୂର୍ତ୍ତଃ ଚମଚା ସର୍ବଗୁଣ ସମନ୍ୱିତଃ
ଯଦି ଦୈବାତ୍ କାର୍ଯ୍ୟଂ ନାସ୍ତି ସେବାକେନ ନିବାର୍ଯ୍ୟତେ ??

ସର୍ବଦା ଧୂର୍ତ୍ତ, ଚଞ୍ଚଳ, ସର୍ବଗୁଣ ସମ୍ପନ୍ନ ଚମଚାଙ୍କୁ ପାଖରେ ରଖିବା ଉଚିତ । ଯଦି ଦୈବାତ୍ ତାଙ୍କ ଦ୍ୱାରା କୌଣସି କାର୍ଯ୍ୟ ନ ହୋଇପାରେ ତଥାପି ତାଙ୍କ ଠାରୁ ସେବା ଓ ତୋଷାମଦ ମିଳିବା ବନ୍ଦ ହୁଏ ନାହିଁ ।

"ସ୍ୱଭବଂ ନ ଜହାତ୍ୟେବ ଚମଚା ଆପଦ୍ ଗତୋଽପିସନ୍
କର୍ପୂରଃ ପାବକ ସ୍ପୃଷ୍ଟଃ ସୌରଭଂ ଲଭତେ ତରାମ୍ ।"

ବିପଦଗ୍ରସ୍ତ ହେଲେ ମଧ୍ୟ ଗ୍ରମର୍ ନିଜର ସ୍ୱଭବ ଛାଡ଼ିପାରେ ନାହିଁ । କର୍ପୂର ନିଆଁରେ ପୋଡ଼ି ହେଲେ ଅଧିକ ସୁବାସ ବିତରଣ କଲପରି ଗ୍ରମର୍ସ୍ତ ମଧ୍ୟ ବିପଦରେ ପଡ଼ିଲେ ସେଥିରୁ ମୁକୁଳିବା ପାଇଁ ଅଧିକ ତୋଷାମଦ କରିଥାଏ ।

"କାବ୍ୟଶାସ୍ତ୍ର ବିନୋଦେନ କାଳୋ ଗଚ୍ଛତି ଧୀମତାମ୍
ବ୍ୟସନେନ ଚ ଗ୍ରମର୍ନାଂ ତୋଷାମଦ କଳହେନବା ।"

ବୁଦ୍ଧିମାନ ବିଜ୍ଞ ବ୍ୟକ୍ତି ମାନଙ୍କର ସମୟ କାବ୍ୟଶାସ୍ତ୍ର ବା ସଦ୍‌ଗ୍ରନ୍ଥ ପାଠରେ କଟେ । ଗ୍ରମର୍‌ମାନେ ବିଳାସବ୍ୟସନ, ତୋଷାମଦ ବା ପରଛିଦ୍ର କହି କଳହ ସୃଷ୍ଟି କରିବାରେ ନିଜକୁ ନିୟୋଜିତ କରନ୍ତି ।

"ପରୋକ୍ଷେ କାର୍ଯ୍ୟ ହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନମ୍
ବର୍ଜୟେତଦୃଶଂ ଗ୍ରମର୍ଗଂ ବିଷକୁମ୍ଭଂ ପୟୋମୁଖମ୍ ।"

ପରୋକ୍ଷରେ ଅନିଷ୍ଟକାରୀ କିନ୍ତୁ ପ୍ରତ୍ୟକ୍ଷରେ ମନଘେନା କଥା କହୁଥିବା ଗ୍ରମର୍ ମୁଖରେ ଅମୃତ ଥିଲେ ମଧ୍ୟ ଅନ୍ତରରେ ବିଷ ଥାଏ । ଏଭଳି ବେଇମାନ୍ ଗ୍ରମର୍‌ଙ୍କୁ ପରିହାର କରିବା ଉଚିତ ।

ଗ୍ରମର୍‌ମାନଙ୍କର ଗୁଣ କୀର୍ତ୍ତନ କରିବା ମୋ ଭଳି ଜଣେ ଅଜ୍ଞ ଲେଖକ ପକ୍ଷରେ ସମ୍ଭବ ନୁହେଁ । ତେବେ ସୂର୍ଯ୍ୟ ଚନ୍ଦ୍ର ବିନା ଆକାଶ, ପ୍ରକୃତି ବିନା ପୃଥିବୀ, ବନ୍ଧୁହୀନ ଜୀବନ ପରି ଗ୍ରମର୍ ବିହୀନ ଆଧିପତ୍ୟ ଆଦୌ ଶୋଭଦାୟକ ନୁହେଁ । ଏଣୁ ଆପଣଙ୍କର ଯଦି କେହି ଗ୍ରମର୍ ନଥାନ୍ତି ଯଥାଶୀଘ୍ର ଜଣେ ଉତ୍ତମ ଗ୍ରମର୍ ଠିକ୍ କରି ଜୀବନକୁ ସାର୍ଥକ କରନ୍ତୁ । ଆପଣ ଜଣେ ନେତା, ମନ୍ତ୍ରୀ, ବଡ଼ ଅଫିସର କି ମାଲିକ ହୋଇଥିଲେ ଚତୁର ଗ୍ରମର୍‌ଟିଏ ନିଶ୍ଚିତ କାର୍ଯ୍ୟରେ ଆସିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।



# ମଦ ବନାମ ଗୌତମ ବୁଦ୍ଧ

ମଦ ହେଉଛି ମର୍ତ୍ତ୍ୟଲୋକର ଅମୃତ । ପୂଜା ପାର୍ବଣ, ଉତ୍ସବରେ ଦିବ୍ୟ ପଞ୍ଚାମୃତ । ପୁରାଣ ଯୁଗରେ ମୁନିଋଷିମାନେ ମଦର ପୂର୍ବ କିସମ ସୋମରସ ପାନକରି, ବେଦ ରଚନା କରୁଥିଲେ । ଦେବତାମାନେ ମଧ୍ୟ ସୋମରସ ପାନ କରି ରଙ୍ଗ ରସରେ ମାତୁଥିଲେ । ଆଜିର ଅତ୍ୟାଧୁନିକ ସୁପର ସୋନିକ ଜେଟ୍ ଯୁଗରେ ମଦ ପିଇ ଆମର ନେତା, ଆଇନ ପ୍ରଣେତା, ଭାଗ୍ୟବିଧାତା, ଅଭିନେତା ଅଭିନେତ୍ରୀ, ସାଧାରଣ ଜନତା ଜୀବନକୁ ଉପଭୋଗ କରୁଛନ୍ତି । ଏଥିରେ ଭୁଲ ରହିଲା କୋଉଠି ? ଯୋଗ ସାଧକମାନେ ପ୍ରାତଃକାଳରେ ଶଯ୍ୟାତ୍ୟାଗ କରି ଅଣ୍ଡାଜଳ ପାନ କରିବାକୁ ପରାମର୍ଶ ଦେଇଥିଲେ । ଏବେତ ଜଳ ପ୍ରଦୂଷିତ ହୋଇ ଯାଇଛି । କେତେକ ଅଞ୍ଚଳରେ ପାନୀୟଜଳର ଅଭାବ ପରିଲକ୍ଷିତ ହୋଇଛି । ଏଣୁ ପାଣି ବଦଳରେ ମଦ ପିଇବାରେ କ୍ଷତି କ'ଣ ? ନେତା, ମାଲିକ, ବଡ଼ଲୋକ, ମନ୍ତ୍ରୀ, ଯନ୍ତ୍ରୀ ମାନେତ ମଦକୁ କଳପାଣି ଭଳି ପିଉଛନ୍ତି । ମଦ ହିଁ ଗୌରବର ପରିଚାୟକ । ଯିଏ ମଦ ନ ପିଏ, ସେ କ'ଣ ଜୀବନକୁ ଠିକ୍ ଭାବରେ ଉପଭୋଗ କରିପାରେ ? ଦେଶୀ ମଦରେ ପ୍ରଚୁର ପରିମାଣରେ ଭିଟାମିନ ରହିଛି ବୋଲି ଆମ ସ୍ୱାସ୍ଥ୍ୟମନ୍ତ୍ରୀ ଘୋଷଣା କରିଛନ୍ତି । ସରକାର-ମାନେ ଗୋଟା ଗୋଟା ମଦ ଦୋକାନ ଖୋଲିବାକୁ ଲାଇସେନ୍ସ ଦେଉଛନ୍ତି । ମହାତ୍ମାଗାନ୍ଧୀ ସିନା ନିଶା ନିବାରଣ ପାଇଁ ଆନ୍ଦୋଳନ କରିଥିଲେ, ମାତ୍ର ତାଙ୍କର ଆଦୌ ଦୂରଦୃଷ୍ଟି ନଥିଲା ବୋଲି ଆମର ନେତାମାନେ ଗବେଷଣା କରି ଜାଣିପାରିବା ପରେ ନିଶା ସେବନକୁ ସାର୍ବଜନୀନ କରିବାକୁ ନିଷ୍ପତ୍ତି କରିଛନ୍ତି । ମଦ ହିଁ ସ୍ୱର୍ଗକୁ ବାଟ କଢ଼ାଏ । ପ୍ରତିବର୍ଷ ଆମ ଦେଶର ବିଭିନ୍ନ ଅଞ୍ଚଳରେ ବହୁଲୋକ ମଦପାନ କରି ସ୍ୱର୍ଗକୁ ଯାଉଛନ୍ତି । ଫଳରେ କିଛି ପରିମାଣରେତ ଜନସଂଖ୍ୟା ନିୟନ୍ତ୍ରିତ ହୋଇ ପାରୁଛି ? ଦୁଃଖ ଭୁଲିବା ପାଇଁ, ଯନ୍ତ୍ରଣାରୁ ଉପଶମ ପାଇବା ପାଇଁ, ଦଙ୍ଗା ହଙ୍ଗାମା କରିବା ପାଇଁ, ଅଭିନୟ କରିବା ପାଇଁ, ଚୋରି, ଧର୍ଷଣ, ହତ୍ୟା, ମାରପିଟ୍ ଆଦି କରିବା ପାଇଁ ମଦର

ଯଥେଷ୍ଟ ଆବଶ୍ୟକତା ରହିଛି । ଏଣୁ ସରକାର ଯଦି ପାଣି ବଦଳରେ ସମସ୍ତଙ୍କୁ ପାଇପ୍ ସାହାଯ୍ୟରେ ମଦ ଯୋଗାଇ ଦିଅନ୍ତେ ତେବେ ଖୁବ୍ ଭଲ ହୁଅନ୍ତା । ମଦ ମାଧ୍ୟମରେ ଦେଶର ରାଜକୋଷ ସମୃଦ୍ଧ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ ।

ମଦ ସହିତ ସିଦ୍ଧ ସାଧକ ଗୌତମ ବୁଦ୍ଧଙ୍କ ନାମ ଯୋଡ଼ି ଦିଆଯିବା ଦ୍ୱାରା ଯେ ମହାପାପ ହୋଇଯିବ ଏକଥା ଶ୍ରୀଲଙ୍କା ଏବଂ ଥାଇଲାଣ୍ଡବାସୀଙ୍କ ମୁଣ୍ଡରେ ଢୁକାଇଲା କିଏ ? ଭାରତର କେଉଁ ମଦ ତିଆରି କମ୍ପାନୀ ସ୍ପେଶାଲ ବ୍ରାଣ୍ଡର ଏକ ନୂଆ କିସମର ମଦ ତିଆରି କରି ତାର ନାମ ରଖିଛନ୍ତି ଏକ୍ସ୍ଟ୍ରା ସ୍ପେଶାଲ "ଗୌତମ ବୁଦ୍ଧ" । ଏଥିରେ ମହାଭାରତ ଗୋଟିଆ ହୋଇଗଲା କେଉଁଠି ? ଏ ପ୍ରକାର ସ୍ପେଶାଲ କ୍ୱାଲିଟିର ମଦ ଅମୃତ ପାନ କରି ଲୋକେ ଯଦି ଧନ୍ୟ ହୋଇ ପାରିବେ ତେବେ ସେମାନଙ୍କର ମୁଣ୍ଡ ବଥଉଛି କାହିଁକି ? ପ୍ରତିବାଦ କରିବାକୁ ସେମାନେ କିଏ ? ସେମାନଙ୍କର ଏତେ ହିମ୍ମତ ଯେ ଏଇ କମ୍ପାନୀକୁ ବେଆଇନ୍ ଘୋଷିତ କରନଗଲେ ଦୃଢ଼ସ୍ୱର ତୋଳିବେ ? ଶୁଣାଯାଏ ଏ ମଧ୍ୟରେ କେବଳ କମ୍ପାନୀର ସ୍ପେଶାଲ ଲେବୁଲ ସମ୍ପର୍କରେ କୋଉଠୁ ଶୁଣି ଦେଇ ସେମାନେ ଶ୍ରୀଲଙ୍କା ଏବଂ ବ୍ୟାଙ୍କକ୍‌ରେ ବିକ୍ଷୋଭ ପ୍ରଦର୍ଶନ କରି ସାରିଲେଣି । ଅଥଚ ଆମ ସରକାର ଚୁପ୍ ରହିଛନ୍ତି ବୋଲି ସମାଲୋଚନା କରିଛନ୍ତି ? ଯେପର୍ଯ୍ୟନ୍ତ ଏଇ ସ୍ପେଶାଲ କ୍ୱାଲିଟିର "ଗୌତମ ବୁଦ୍ଧ" ବୋତଲ ଘରେ ଘରେ ନ ପହଞ୍ଚିଛି ସେ ପର୍ଯ୍ୟନ୍ତ ତାର ଭଲମନ୍ଦ ବିଚାର କରିବାକୁ ସେମାନେ କିଏ ? ଗୌତମ ବୁଦ୍ଧ କ'ଣ କେବଳ ସେଇମାନଙ୍କର ? ଭାରତରୁ ଯଦି ଗୌତମଙ୍କର ଚେଲାମାନେ ଶ୍ରୀଲଙ୍କା କି ଥାଇଲାଣ୍ଡ ଯାଇ ନଥାନ୍ତେ, ତେବେ ହୁଏତ ବୁଦ୍ଧ କିଏ ସେମାନେ ଜାଣିପାରି ନଥାନ୍ତେ । ଆମେ ଆମର ପୂର୍ବପୁରୁଷ, ସାଧୁ ସନ୍ଥ, ସାଧକ, ଠାକୁର ଦେବତାମାନଙ୍କୁ କିପରି ସମ୍ମାନିତ କରି ଜାଣିଛୁ ସେମାନେ ବୋଧେ ଆଦୌ ଜାଣି ନାହାନ୍ତି ।

ଆଜିକାଲି ଲେବୁଲମରା ପ୍ରଚାରର ଯୁଗ । ବିନା ଲେବୁଲରେ କିଛି ହୁଏନା । ତାଛଡ଼ା ବ୍ୟବସାୟିକ ସଫଳତା, ଲୋକପ୍ରିୟତା ପାଇଁ ସ୍ୱତନ୍ତ୍ର ଲେବୁଲ ଏବଂ ପ୍ରଚାରର ଆବଶ୍ୟକତା ରହିଛି । ଆମେ ଆମ ଦେଶର ମହାନ୍ ନେତା, ମହାପୁରୁଷ, ସାଧୁ, ସନ୍ଥ, ଠାକୁର ଠାକୁରାଣୀଙ୍କ ନାମରେ ଯେତେ ସଂସ୍ଥା ଗଢ଼ିଛୁ ତାହା ଅନ୍ୟ କୋଉ ଦେଶରେ ସମ୍ଭବ ହୋଇ ନଥିବ । ଡାକ ଟିକେଟ୍‌ରେ ଷ୍ଟିକରରେ ସେମାନଙ୍କ ଚିତ୍ର ଦେଇ ଆମେ ଘରେ ଘରେ ପରିଚିତ କରେଇ ପାରିଛୁ ।

ଦେଶର ସର୍ବସାଧାରଣ ପୀଠଗୁଡ଼ିକୁ ସେମାନଙ୍କ ନାମରେ ନାମିତ କରିଛୁ । ଗାନ୍ଧି ମୈଦାନ, ନେହେରୁ ଖାଦାନ, ସୁଭାଷ ଲଜ୍, ପଟେଲ ହୋଟେଲ ଇନ୍ଦୀରା ପାର୍କ, ରାଜୀବ ନଗର, ଜୟପ୍ରକାଶ ମାର୍ଗ, ଗୁଣକ୍ୟ ପୁରୀ, ତିଲକ ଛକ, ଗୋପବନ୍ଧୁ ସରଣୀ, ଭଞ୍ଜ କଳାକେନ୍ଦ୍ର, ରବୀନ୍ଦ୍ର ମଣ୍ଡପ, ଧୀନକୃଷ୍ଣ କଲେଜ, ନେହେରୁ ବିଶ୍ୱବିଦ୍ୟାଳୟ, ଇନ୍ଦୀରାଗାନ୍ଧି ଆନ୍ତର୍ଜାତିକ ବିମାନ ବନ୍ଦର, ଶିବାଜୀ ଷ୍ଟାଡ଼ିୟମ, ତିରୁପତି ହୋଟେଲ, ମା କାଳୀ ଅଣ୍ଡା ଦୋକାନ, ତାରିଣୀ ପୁସ୍ତକ ଭଣ୍ଡାର, ଶାରଳା ପୁଷ୍ପ ଭଣ୍ଡାର, ଶ୍ରୀଜଗନ୍ନାଥ ମିଷ୍ଟାନ୍ନଭଣ୍ଡାର, ଚଣ୍ଡୀ ଫଳ ଦୋକାନ, ଦୁର୍ଗା ମେଡ଼ିସିନ ଷ୍ଟୋର, ବଜରଙ୍ଗଦଳ, ଶ୍ରୀରାମ ଲଜ, ସୀତା ଭୋଗ, ଶ୍ରୀକୃଷ୍ଣ ଚିତ୍ରାଳୟ, ହରିକଥା ସମିତି ଆଦି ଅନେକ ନାମକରଣ କରି ଅତିଷ୍ଠ ହୋଇ ପଡ଼ିବା ପରେ ଆମେ ସେମାନଙ୍କୁ ଅଧିକ ମନେ ପକାଇବା ପାଇଁ ତଥା ଅମର କରି ରଖିବାପାଇଁ ସେମାନଙ୍କ ନାମକୁ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ସହିତ ଯୋଡ଼ିନ୍ତୁ । ଏଇ ଯେମିତିକି ନେହେରୁ ଜର୍ଦ୍ଦା, ପଟେଲ ଚୁରୁଟ, ମଦର ଇଣ୍ଡିଆ ବିଡ଼ି, ଜୟପ୍ରକାଶ ଧୋତି, ବିନୋବା ଖଦି, ଦୁର୍ଗା ଗୁଡ଼ାଖୁ, କାଳୀମାତା ଯାଦୁ ମଲମ, ଜୟପ୍ରଦା ଶାଢ଼ୀ, ହେମାମାଳିନୀ ଚୁଡ଼ି, ଶ୍ରୀଜଗନ୍ନାଥ ଚଡ଼ି, ତିରୁପତି ତାଡ଼ି, ସୋନିଆ ଘଡ଼ି, ରାଜୀବ ଖଇନି, ଶ୍ରୀଲକ୍ଷ୍ମୀ ଭୋଗ ଅଟା, ତାରିଣୀ ଆଗ୍ରର, ଶାରଳା ଗ୍ରଟ୍ ଆଦି ଅନେକ ଅନେକ । ଗାନ୍ଧିଜୀଙ୍କ ଜନ୍ମତିଥିରେ ତାଙ୍କରି ନାମରେ ଗାନ୍ଧି ମଦ ଦୋକାନ ବି ଆମ ଦେଶରେ ଉଦ୍‌ଘାଟିତ ହୋଇଛି । ସବୁ ନାମ ସରିଯିବା ପରେ ଆମ ସରକାର ଗୌତମ ବୁଦ୍ଧଙ୍କ ନାମରେ ସ୍ପେଶାଲ ବ୍ରାଣ୍ଡ ମଦ ତିଆରି ପାଇଁ ଲାଇସେନସ୍ ଦେବାରେ କ୍ଷତି କ'ଣ ଯେ ?

ଏଇ ମଦ ପିଇଲେ ଲୋକେ ମାତାଲ ହେବେନି । ଚୋରି, ହତ୍ୟା, ଧର୍ଷଣରେ ଲିପ୍ତ ହେବେନି । ଝିଅ ବୋହୂଙ୍କୁ ରାସ୍ତାରେ ହଲପଟା କରିବେ ନାହିଁ । ସାଧୁ ସନ୍ଥ ପାଲଟି ଯିବେ । ଏଥିରେ ଯେଉଁ ଏସେନ୍‌ସ ଦିଆଯାଇଛି ତା ପ୍ରଭାବରେ ଏଇ ମଦ ପିଇ ଲୋକେ ତପସ୍ୟାରତ ହେବେ ଠିକ୍ ବୁଦ୍ଧଙ୍କ ପରି । ଦେଶ ଆଗେଇ ପାରିବ । ସମସ୍ତେ ଦିବ୍ୟଜ୍ଞାନୀ ପାଲଟି ଯିବେ ।

(ଖବର କାଗଜରେ ପ୍ରକାଶିତ ହୋଇଥିବା ଏକ ସମ୍ବାଦ; ଯୋଉଥିରେ ଭାରତ ଏକ କମ୍ପାନୀ ଗୌତମ ବୁଦ୍ଧ ବ୍ରାଣ୍ଡ ମଦ ପାଇଁ ଲାଇସେନ୍‌ସ ପାଇଥିବା ଏବଂ ଶ୍ରୀଲଙ୍କା ଥାଇଲାଣ୍ଡରେ ବିକ୍ଷୋଭ ପ୍ରଦର୍ଶିତ ହୋଇଥିବା କଥା ସମସ୍ତଙ୍କ ଦୃଷ୍ଟିଆକର୍ଷଣ କରିଥିଲା) ।



# ସନ୍ତ୍ରାସବାଦୀ

ଅତି ଅପ୍ରତ୍ୟାଶିତ ଭବରେ ରାଜ୍ୟର ମହାମହିମ ମନ୍ତ୍ରୀ, ପ୍ରବଳ ପରାକ୍ରମୀ, ଅପ୍ରତିଦ୍ୱନ୍ଦୀ ନେତା, ଜନଗଣର ଦେବତା ଗରିବ ଦାସଙ୍କର ମୃତ୍ୟୁ ଖବର ଜଙ୍ଗଲର ନିଆଁ ଭଳି ଚତୁର୍ଦ୍ଦିଗରେ ବ୍ୟାପିଗଲା । ତାଙ୍କର ସମର୍ଥକ ଚେଲା ଚାମୁଣ୍ଡାମାନେ ଦାରୁଣ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । କେତେଜଣ କାନ୍ଦି କାନ୍ଦି ମୂର୍ଚ୍ଛା ହୋଇଗଲେ । କିଏ ଆଉ ସେମାନଙ୍କୁ ନିଜର ବାହୁଚ୍ଛାୟା ତଳେ ଆଶ୍ରୟ ଦେବ ? ଧର୍ଷଣ କରି, ଖୁନ୍ କରି, ମାରପିଟ୍ କରି ହାଜତକୁ ଗଲେ ବି ଗୋଟାଏ ଫୋନ୍‌ରେ କିଏ ଆଉ ଖଲାସ କରି ଆଣିବ ?

ଶବକୁ ବିରାଟ ଶୋଭାଯାତ୍ରାରେ ନେଇ ଦାହ ସଂସ୍କାର କରାଗଲା । କିଛି ଚେଲା ତାଙ୍କ ଘାଟରେ ବୁଡ଼ିଲେ, ଲଣ୍ଡା ହେଲେ । ଶେଷରେ ସମସ୍ତେ ଦାବୀ କଲେ ଏ ଘଟଣାର ବିଚାର ବିଭାଗୀୟ ତଦନ୍ତ ହେଉ । ମନ୍ତ୍ରୀଙ୍କ ମୃତ୍ୟୁ ସାଧାରଣ ଘଟଣା ନୁହେଁ । ଏହା ଏକ ଷଡ଼ଯନ୍ତ୍ର । ବିରୋଧୀ ଦଳର କାରସାଦୀ । ନିର୍ମମ ହତ୍ୟାକାଣ୍ଡ । ହତ୍ୟାକାରୀଙ୍କୁ ଧରି କଠୋର ଦଣ୍ଡ ଦିଆଯାଉ । ପ୍ରଶାସନ ପକ୍ଷରୁ ତତ୍ପରତା ପ୍ରକାଶ ପାଇଲା । କିଏ କହିଲା ଏହି ହତ୍ୟାକାଣ୍ଡ ସହିତ ସନ୍ତ୍ରାସବାଦୀ ଗୋଷ୍ଠୀର ହାତ ଅଛି । କିଏ କହିଲା ପାକିସ୍ଥାନର ଚକ୍ରାନ୍ତ । କିଏ କହିଲା ଏଲ: ଟି: ଟି: ଇ: ଏଇ କାଣ୍ଡ ଭିଆଇଛି । ପୋଲିସ ବିଭାଗକୁ ଅଧିକ ସକ୍ରିୟ କରାଗଲା । ବିଭିନ୍ନ ସ୍ଥାନରେ ଚଢ଼ଉ କରାଗଲା । ବହୁ ଲୋକଙ୍କୁ ଜେରା କରାଗଲା । କିନ୍ତୁ ଆଶାନୁରୂପ ଫଳ ମିଳିଲା ନାହିଁ । ଶେଷରେ ତଦନ୍ତ ଭାର କ୍ରାଇମବ୍ରାଞ୍ଚକୁ ଦିଆଗଲା ।

ବ୍ୟାପକ ଧରା ପଗଡ଼, ଅନୁସନ୍ଧାନ ପରେ ଜଣେ ଯୁବକକୁ ଷ୍ଟେସନ ପ୍ଲାଟଫର୍ମରେ ବୁଲୁଥିବା ସମୟରେ ଗିରଫ କରି ଆଣି ହାଜତରେ ପୂରାଇ ଦିଆଗଲା । ଜେରା ପରେ ଜେରା ଚାଲିଲା । କୌଣସି ପ୍ରଶ୍ନର ଉତ୍ତର ସେ ଦେଉ ନଥାଏ ।

: ଏଇ ତୋ ନାଁ କ'ଣ ? (ନୀରବ)

: ତୋ ବାପ ନାଁ କ'ଣ ? (ନୀରବ)

: ତୋ ଘର କୋଉଠି ? (ନୀରବ)

: ତୋତେ ଏ କାମ ପାଇଁ କିଏ ପଠେଇଛି ? (ନୀରବ)

: ତୁ କୋଉ ଗୋଷ୍ଠୀର ? (ନୀରବ)

ଟର୍ଚ୍ଚର ସେଲ୍‌କୁ ନେଇ ତା ଉପରେ ଅମାନୁଷିକ ଅତ୍ୟାଚାର କରାଗଲା । ତଥାପି କିଛି ସୁଫଳ ମିଳିଲା ନାହିଁ । ତା ତୁଣ୍ଡରୁ ପଦେ କଥା ବାହାରିଲା ନାହିଁ । କେହି କେହି ଅନୁମାନ କଲେ ଇଏ ନିଶ୍ଚୟ କୋଉ ସନ୍ତ୍ରାସବାଦୀ ଗୋଷ୍ଠୀର ସୁଇସାଇଡ୍ ସ୍କ୍ୱାର୍ଡ୍‌ର ମେମ୍ବର । ମରିବ ପଛେ ତୁଣ୍ଡ ଖୋଲିବ ନାହିଁ ।

ତାକୁ କୋର୍ଟକୁ ଚାଲାଣ କରାଗଲା । ବିଚାର ଚାଲିଲା । ସରକାରୀ ଓକିଲ ତାଙ୍କର ଯୁକ୍ତି ଦର୍ଶାଇ କହିଲେ, "ମିଃ ଲର୍ଡ ! ଇଏ ଏକ କୁଖ୍ୟାତ ଅପରାଧୀ । ସନ୍ତ୍ରାସବାଦୀ ଗୋଷ୍ଠୀର ସଦସ୍ୟ । ପାକିସ୍ଥାନର ଗୋଇନ୍ଦା ସଂସ୍ଥା ସହିତ ଯା'ର ସମ୍ପର୍କ ରହିଛି । ବହୁ ହତ୍ୟାକାଣ୍ଡ, ଡକେଇତି, ଧର୍ଷଣ କାଣ୍ଡ ସହିତ ଇଏ ଜଡ଼ିତ । କଲିକତା, ମାନ୍ଦ୍ରାଜର ବୋମା ବିସ୍ଫୋରଣରେ ମଧ୍ୟ ଯାକି ହାତ ଥିବା ଜଣା ପଡ଼ିଛି । ଯାକୁ ଫାଶୀ ଦିଆଯିବା ଉଚିତ ।

ବିଚାରପତି ତାକୁ ଆତ୍ମରକ୍ଷାର ସୁଯୋଗ ଦେଲେ । ମାତ୍ର ସେ ନୀରବ ରହିଲା । ଶେଷରେ ତାକୁ ଫାଶୀ ଦଣ୍ଡରେ ଦଣ୍ଡିତ କରାଗଲା । ନିର୍ଦ୍ଦିଷ୍ଟ ଦିନ ଭୋର ସକାଳେ ତାକୁ ଫାଶୀ ଦିଆଯିବା ପୂର୍ବରୁ ତାର ଶେଷ ଇଚ୍ଛା ପଚରା ଗଲା । ତଥାପି ସେ କିଛି କହିଲା ନାହିଁ । ତାକୁ ଫାଶୀ ଦିଆଗଲା । ମହାମହିମ ମନ୍ତ୍ରୀଙ୍କ ହତ୍ୟାକାଣ୍ଡରେ ଦୋଷୀ ସାବ୍ୟସ୍ତ ସନ୍ତ୍ରାସବାଦୀକୁ ଫାଶୀ ଦିଆଯିବା ସମ୍ବାଦ ପ୍ରକାଶ ପାଇଲା ।

ବିଚରା ବୁଢ଼ୀଟିଏ କାନ୍ଦି କାନ୍ଦି ତା ପୁଅକୁ ଖୋଜୁଥିବାର ଦେଖାଗଲା ବଜାରରେ, ଥାନା ସାମନାରେ, କଚେରୀ ହତାରେ । ପିଲଟି ବେଳୁ ବାପ ଛେଉଣ୍ଡ । ମୂକ, ବଧିର ସେ । ଘରୁ ରାଗିକରି ପଳାଇ ଆସିଥିଲା । କିଏ ଦେବ ତା ପୁଅର ସନ୍ଧାନ ? ସେ ଯେ ସନ୍ତ୍ରାସବାଦୀ । ମହାମହିମ ମନ୍ତ୍ରୀଙ୍କର ହତ୍ୟାକାରୀ ।

●

# ଆମେ ସବୁଥିରେ ପ୍ରଥମ

ବେଳେବେଳେ ଅତି ଅଳ୍ପ ଅପାଠୁଆ ସାଧାରଣ ଲୋକେ ଏମିତି ଗୋଟେ ଅଧେ କଥା କହି ପକାନ୍ତି, ଯାହା ଶୁଣିଲେ ଯେ କୌଣସି ବିଜ୍ଞ, ଉଚ୍ଚ ଶିକ୍ଷିତ ବୁଦ୍ଧିଜୀବୀର ଅକଲ ଗୁଡ୍‌ଡୁମ୍ ହୋଇଯାଏ । ଦିନେ ସନ୍ଧ୍ୟା ସମୟରେ ସମୁଦ୍ରକୂଳ ଆଡ଼େ ଘେରାଏ ବୁଲି ଆସିବା ପାଇଁ ବାହାରିଥାଏ । ଦେଖିଲି ଝାଉଁ ବଣ ଆଡୁଆଳରେ ଦି'ଚାରି ଜଣ ବସି ମଦ ପିଉଥାନ୍ତି ଏବଂ ଚିଙ୍ଗୁଡ଼ି ଭଜା ଚାଟ୍ ଖାଇ ଦେଶ ବିଦେଶ ତଥା ଆମ ଓଡ଼ିଶାର ରାଜନୀତି କଥା ଆଲୋଚନା କରୁ-ଥାନ୍ତି । ଜଣେ କହୁଥାଏ ଆମେ ଶଳା ପଖାଳ ଖିଆ ଓଡ଼ିଆମାନେ ଅନେକ ପଛରେ ପଡ଼ିଗଲୁ । ଅନ୍ୟମାନେ ଆଗକୁ ଆଗକୁ ବଢ଼ି ଚାଲିଥିବା ବେଳେ ଆମେ କଙ୍କଡ଼ା ଦଳ ଗୋଡ଼ ଟଣାଟଣି ହୋଇ ତଳକୁ ତଳକୁ ଗଡ଼ି ଚାଲିଛୁ । ଅନ୍ୟ ଜଣେ ଆଉ ଗିଲାସେ ପିଇ ନିଶରେ ହାତମାରି ଲମ୍ବା ହେକୁଟି ମାରି କହିଲା ତୁ ଶଳା କୋଉ ଜମାନେର୍ମେ ଅଛୁ କହିଲୁ ? ଆମେ ଯେମିତି ଆଗେଇଛୁ ଆଉ କେହି ଶଳା ଯେତେ ଚେଷ୍ଟା କଲେ ମଧ୍ୟ ଆମ ପାଖ ପହଞ୍ଚି ପାରିବେନି । ଆଉ ଜଣେ ତାକୁ ସମର୍ଥନ କଲା । ସେମାନଙ୍କ କଥାବାର୍ତ୍ତା, ଆଲୋଚନାର ସାରମର୍ମ ଆପଣମାନଙ୍କ ଆଗରେ ଉପସ୍ଥାପିତ କରୁଛି । ଆପଣମାନେ ସେସବୁକୁ ତର୍ଜମା କରି ଦେଖିବେ ଏଥିରେ ସତ୍ୟତା କେତେ ପରିମାଣରେ ଅଛି ।

ସେମାନଙ୍କ କହିବା ଅନୁସାରେ ଆମେ ସବୁଥିରେ ପ୍ରଥମ ଏବଂ ସବୁ କ୍ଷେତ୍ରରେ ଆଗୁଆ । ଆମଭଳି ଏ ଜଗତରେ ଆଉ କିଏ ଅଛି ? ଅତୀତରେ ଏଇ ଆମର ଓଡ଼ିଶା ବା ଉତ୍କଳ ଭୂଇଁ କୃଷି, ଶିଳ୍ପ, ବାଣିଜ୍ୟ, ଚାରୁ-କାରୁ କଳା, ଭାସ୍କର୍ଯ୍ୟ, ଶିକ୍ଷା-ସଂସ୍କୃତି କ୍ଷେତ୍ରରେ ଅଗ୍ରଣୀ ଥିଲା । ଓଡ଼ିଆ ଜାତିର ବୀରତ୍ୱ, ବଳିଦାନ, ତ୍ୟାଗ, ଆଦର୍ଶ, ନିଷ୍ଠା ବିଶ୍ୱଦରବାରକୁ ଚମକାଇ ଦେଇଥିଲା । ଆମ ମଧୁବାବୁ ଥିଲେ ସବୁ କଥାରେ ପ୍ରଥମ ଓଡ଼ିଆ । ଆମ ଗୋପବନ୍ଧୁଙ୍କ ପରି ଦରଦୀ ନେତା ଆଉ କିଏ ଅଛି ? ଆମ ପୁରୀ, କୋଣାର୍କ, ଖଣ୍ଡଗିରି, ଉଦୟଗିରି, ନନ୍ଦନକାନନ, ଭିତରକନିକା, ଧଉଳି ପାହାଡ଼, ହରିଶଙ୍କର, ଶିମିଳିପାଳ ଭଳି

ଦର୍ଶନୀୟ ସ୍ଥାନ ଆଉ କୋଉଠି ଅଛି ? ଆମ ଜଗନ୍ନାଥତ ଜଗତର ନାଥ, ବଡ଼-ଠାକୁର । ତାଙ୍କ ଦେଉଳ ବଡ଼ ଦେଉଳ । ତାଙ୍କ ଦାଣ୍ଡ ବଡ଼ଦାଣ୍ଡ । ତାଙ୍କ ପୂଜକ ବଡ଼ ପଣ୍ଡା । ତାଙ୍କର ପୁଣି ବଡ଼ ପେଟ । ତାଙ୍କ ପାଖରେ ଷାଠିଏ ପଉଟି ଭୋଗ ଲଗେ । ତାଙ୍କ ରଥଯାତ୍ରା ଦେଖିବାକୁ, ବଡ଼ଦାଣ୍ଡରେ ଗଡ଼ିବାକୁ, ତାଙ୍କ କୈବଲ୍ୟ କଣିକାଏ ପାଇବାକୁ ପୃଥିବୀଯାକର ଲୋକେ ରୁଣ୍ଡ ହୋଇ ଯାଆନ୍ତି ନୀଳାଚଳଧାମରେ ।

ଏଇ ଜାତି ଦୁର୍ଦ୍ଧର୍ଷ ଚଣ୍ଡାଶୋକଙ୍କ ଜୀବନର ଗତିପଥ ବଦଳାଇ ଦେଇ-ଥିଲା । ତାଙ୍କୁ ପ୍ରିୟଦର୍ଶୀ ଅଶୋକରେ ପରିଣତ କରିଥିଲା । ଏଇ ମାଟିର ପୁଅ ଧରମା, ବାଜିଆ, ଅକ୍ଷୟ କୀର୍ତ୍ତି ରଖି ଯାଇଛନ୍ତି । ଆମରି ସାଧବ ପୁଅମାନେ ବୋଇତ ନେଇ ଦରିଆ ପାରି ହୋଇ ସୁଦୂର ଜାଭା-ସୁମାତ୍ରା, ବର୍ଣ୍ଣିଓ, ବାଲି ଦ୍ୱୀପରେ ବାଣିଜ୍ୟ କରୁଥିଲେ ବହି ଆଣୁଥିଲେ କେତେ ଧନରତ୍ନ । ଆମରି ପୂର୍ବ ପୁରୁଷ ଗଙ୍ଗା ଠାରୁ ଗୋଦାବରୀ ଯାଏ ବିରାଟ ସାମ୍ରାଜ୍ୟର ଅଧୀଶ୍ୱର ଥିଲେ । କାଳକ୍ରମେ ବିଦେଶୀମାନେ ଆମ ରାଜ୍ୟକୁ ଅଧିକାର କରି ଖଣ୍ଡ ଖଣ୍ଡ କରି-ଦେଲେ । ଆମ ନେତାମାନେ ପୁଣି ଏକତ୍ରିତ କରି ଅଖଣ୍ଡ ଓଡ଼ିଶା ଗଠନ ପାଇଁ ଲାଗି ପଡ଼ିଲେ । ଏତେବଡ଼ ରାଜ୍ୟଟେ ଗଢ଼ି କାଳେ ଠିକ୍ ଭାବରେ ଚଳାଇ ପାରିବେନି ସେଥିପାଇଁ କିଛି କିଛି ଅଂଶ ବଙ୍ଗ, ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ରକୁ ଦେଇଦେଲେ । ସତରେ ଏବେ ଯେତିକି ଅଛି ସେତିକିକୁ ନିର୍ମଳ ଶାସନ ଦେଇ ଚଳାଇ ହେଉନି, ବିଚ୍ଛିନ୍ନାଞ୍ଚଳକୁ ଯୋଡ଼ି ଖାଲି ଯାହା ହଟହଟା ହୋଇଥାନ୍ତେ । ସବୁ କଥାରେ ସେମାନେ ଆମ ସହିତ ଭାଗ ବସେଇଥାନ୍ତେ । ବରଂ ଭଲ ହୋଇଛି ସେମାନେ ପଡ଼ୋଶୀଙ୍କ ସହିତ ଲଢ଼େଇ କରି ଚଳନ୍ତୁ ନଚେତ୍ ଅତ୍ୟାଚାରିତ ହୋଇ ଆଖିରୁ ଲୁହ ଗଡ଼ାନ୍ତୁ, ଆମର କ'ଣ ଯାଏ ଆସେ ?

ପେଟରେ ଓଦା କନା ଦେଇ ସବୁ ଅନ୍ୟାୟ, ଅତ୍ୟାଚାରକୁ ନିର୍ବିବାଦରେ ସହିବାରେ ଓଡ଼ିଆମାନେ ପ୍ରଥମ । ପେଟ ପାଇଁ ପେଟର ପିଲା ବିକିବାରେ, ଦରକାର ହେଲେ ନିଜର ମାଇପ ବିକିବାରେ ଆମ ଓଡ଼ିଆମାନେ ପ୍ରଥମ । ବିଷାକ୍ତ ମଦ ପିଇ ସିଧା ସଳଖ ସ୍ୱର୍ଗକୁ ଟିକେଟ କାଟିବାରେ ଓଡ଼ିଆମାନେ ପ୍ରଥମ । ଆମ ନେତାମାନେ ବି କମ୍ କରିତ୍‌କର୍ମା ନୁହଁନ୍ତି । ହଜାରେ ଦିନରେ ହଜାରେ ଶିଳ୍ପ ପ୍ରତିଷ୍ଠା କରି ପାରନ୍ତି । ପାଞ୍ଚ ବର୍ଷରେ ପନ୍ଦରଟା ଇସ୍ପାତ କାରଖାନା ବସାଇ ପାରନ୍ତି । ତିଳକୁ ତାଳ କରି ପାରନ୍ତି । କଳକାରଖାନା ସବୁ ପରିବା ଦରରେ ବଡ଼ ବଡ଼ କମ୍ପାନୀକୁ ବିକ୍ରି କରିପାରନ୍ତି । ଅନୁପ୍ରବେଶକାରୀଙ୍କୁ ନିମନ୍ତ୍ରଣ କରି ଆଣି ରାଜ୍ୟରେ ସ୍ଥାୟୀ ଭାବରେ ଥଇଥାନ କରାଇ ପାରନ୍ତି ।

ରାଜକୋଷକୁ ଚଳୁକରି ନିଜର ପେଟ ଫୁଲେଇ ପାରନ୍ତି । ନିଜ ଲୋକଙ୍କୁ ଅବସର ପରେ ପୁନଃ ନିଯୁକ୍ତି ଦେଇ ପାରନ୍ତି । ପରୋକ୍ଷ ଭାବରେ ଶାସନ ଡୋରି ଧରିବାରେ ମଧ୍ୟ ଆମ ନେତାମାନେ ପ୍ରଥମ ।

ଆହୁରି ଅନେକ କଥାରେ ଆମେ ତଥା ଆମ ରାଜ୍ୟ ପ୍ରଥମ । ସଡ଼କ ଦୁର୍ଘଟଣା, ନାରୀ ଧର୍ଷଣ, ଯୌତୁକ ନିର୍ଯାତନା, ବଧୂହତ୍ୟା, ପ୍ରିୟାପ୍ରୀତି ଶୋଷଣ କ୍ଷେତ୍ରରେ ଆମ ରାଜ୍ୟ ପ୍ରଥମ ସ୍ଥାନ ଅଧିକାର କରିଛି । ମୁଖ୍ୟମନ୍ତ୍ରୀଙ୍କୁ ବିଧାନ ସଭରେ ହଲପଟା କରି କଣ୍ଢ ଫିଟାଇ ଦେବାରେ ଓଡ଼ିଆମାନେ ପ୍ରଥମ । ଉଧାର କରି ବିଭିନ୍ନ ଉତ୍ସବ ମହା ଜାକଜମକରେ ପାଳନ କରିବାରେ ଓଡ଼ିଆ-ମାନେ ପ୍ରଥମ । ଆମ ନେତାମାନେ ପରସ୍ପର ମୁଣ୍ଡରେ ଅଠା ବୋଳିବାରେ ପ୍ରଥମ । ପିଟାମରା ଲାଗି ନିଜ ଭିତରେ କିଛି ମନାନ୍ତର ନାହିଁ ବୋଲି ସଫେଇ ଦେବାରେ ପ୍ରଥମ । ପାରିବାରିକ ରାଜନୀତିକୁ ବଞ୍ଚେଇ ରଖିବାରେ ପ୍ରଥମ । ଓଡ଼ିଆ ମାତୃଭାଷା ବଦଳରେ ଆମ ଅଫିସରମାନେ ଇଂରାଜୀ କହିବାରେ ପ୍ରଥମ । ଓଡ଼ିଆ ସ୍କୁଲର ପଛେ ଘର ନଥାଉ, ଶିକ୍ଷକ ନଥାନ୍ତୁ, ଇଂରାଜୀ ମିଡ଼ିୟମ ସ୍କୁଲ ପ୍ରତିଷ୍ଠା କରିବାରେ ଆମେ ପ୍ରଥମ । କାମ ନକରି ବିଲ ପାଶ୍ କରାଇ ନେବାରେ ଆମ କଣ୍ଟ୍ରାକ୍ଟର ମାନେ ପ୍ରଥମ । ଲବି କରିବାରେ, ବଟି ଦେବାରେ, ହାଁଜୀ ହାଁଜୀ କହିବାରେ ଆମେ ପ୍ରଥମ । ଅନାହାର ମୃତ୍ୟୁରେ ମଧ୍ୟ ଆମ ରାଜ୍ୟ ପ୍ରଥମ । ପରୀକ୍ଷାରେ କପି କରିବାରେ, ପ୍ରଶ୍ନପତ୍ର ଲିକ୍ କରିବାରେ, ଧରାଧରି କରି ଡିଭିଜନ ପାଇବାରେ ଆମେ ପ୍ରଥମ । ଏମିତି ଆହୁରି ଅନେକ କଥା ରହିଛି ଯୋଉଥିରେ ଆମ ଓଡ଼ିଶା ତଥା ଓଡ଼ିଆମାନେ ପ୍ରଥମ ।

ସବୁ କଥା ତ ଶୁଣିଲେ । ଏବେ ଆପଣମାନେ ହିଁ ବିଚାର କରନ୍ତୁ, ଆମେ କୋଉଥିରେ ହୀନିମାନ ??



৺

# ଆମ ଦେଶର ହାଲଚାଲ

"ସଙ୍ଗମ ଖଟି" ଆଜ୍ଞା ! ନାଁଟା ଶୁଣି ମୋତେ ବି କେମିତି କେମିତି ଲାଗିଥିଲା । ଜଣକୁ ପଚାରିବାରୁ ସେ କହିଲା, ଖଟି ନା ଭଟିମ ? ଖଟିରୁ ଭଟି । ମନେ ପଡ଼ିଗଲା ଗଡରକେଲାର ସହରତଳି ଅଞ୍ଚଳ ବନ୍ଧମୁଣ୍ଡାର ଶେଷ ଅଂଶରେ ଗଫୁର ମିଆଁର ଭଟି । ଆପଣମାନେ ଖଗପ ଭବି ପାରନ୍ତି । କିନ୍ତୁ ଭଟି, ଖଟି, ଘାଟି, ମାଟି ; ଏସବୁ ଦେଶର ପ୍ରଧାନ ସମ୍ପଦ । ବିଭିନ୍ନ କାରଖାନା ଦ୍ୱାରା ନଦୀ ଜଳ ପ୍ରଦୂଷିତ । ସହରର ପାଣି ପାଇପ୍‌ରେ ଶିଉଳି, ନାନା ପ୍ରକାର ଦୂଷିତ ପଦାର୍ଥ ବାହାରୁ ଥିବାରୁ ଲୋକମାନଙ୍କୁ ବିଶୁଦ୍ଧ ପାନୀୟ ଯୋଗାଇ ଦେବା ସକାଶେ ବାବୁ ଗଫୁର ମିଆଁ ଦୟାପରବଶ ହୋଇ କଳପାଣିକୁ ବୋତଲରେ ପୂରାଇ ଯୋଗାଇ ଦେଉଛନ୍ତି । ଲୋକେ ମନ ଖୁସିରେ ବୋତଲ ପରେ ବୋତଲ ପିଇ ଯାଉଛନ୍ତି । ସେଇ ଭଟି ସାମନା ଦେଇ ଲମ୍ବି ଯାଇଥିବା ଗଳିରେ ନାକ ସିଧା କିଛିବାଟ ଗଲେ ସେକ୍‌ଟର ସି । ଠିକ୍ ମଝାମଝି ଗଧାସ୍ୱାମୀ ପଟି । ତା ପାଖକୁ କାଳୀକା ଟଟି । ସେପଟେ ମୁଣ୍ଡାରି ଡାଟି । ଏପଟେ ବଉଦୀ ସୁଇଟ୍ । ତାରି ମଝିରେ ବାବା ଶ୍ରୀ ଶ୍ରୀ ଖାଲମଦ୍ ମହାପ୍ରଭୁ ମୃତ୍ୟୁଞ୍ଜୟ ଦାସ ଫତେସିଂ ଠନ୍‌ଠନ୍‌ଓ୍ୱାଲଙ୍କର ସଙ୍ଗମ ଖଟି ।

ହାଲ ବନ୍ଦୋବସ୍ତରୁ ଜଣାଯାଏ ବାବା ଏଇ କେତେ ଦିନ ହେଲା ଏଠାରେ ବେଶ୍ ଆସର ଜମାଇ ଲୋକଙ୍କୁ ଇଲମ ଦେବାରେ ଦିନରାତି ଏକାକାର କରି ଦେଇଛନ୍ତି । ଜନ୍ଦା ପିମ୍ପୁଡ଼ିଙ୍କ ଭଳି ଆଖପାଖ ଖଣ୍ଡମଣ୍ଡଳରୁ ଲୋକେତ ଧାଡ଼ି ବାନ୍ଧିଛନ୍ତି ଗଲା ? ଆବାଳ ବୃଦ୍ଧବନିତାଙ୍କ ଭିଡ଼ ଜମିଛି । ସତେ ଯେମିତି କୁମ୍ଭ ମେଳାରେ ବୁଡ଼ ମାରିବାକୁ ଧାଇଁଛନ୍ତି ଯାତ୍ରୀମାନେ । ବାବା ସ୍ୱୟଂ ତ୍ରିକାଳ ଦର୍ଶୀ, ମୃତ୍ୟୁଞ୍ଜୟୀ । କିମ୍ବଦନ୍ତୀ ଅଛି, ଥରେ କୁଆଡ଼େ ବାବାଙ୍କୁ ଯମଦୂତମାନେ ଭୁଲରେ ଟବର୍ଦ୍ଦସ୍ତ ନେଇ ଯାଇଥିଲେ । ବାବା କି ଛାଡ଼ିବା ଲୋକ ? ସେ ତ ଇଚ୍ଛା ମୃତ୍ୟୁ ଲାଭ କରିଦେବେ । ତାଙ୍କୁ ଅଯଥାରେ ହଟହଟା କରିଥିବାରୁ ସେ ବ୍ରହ୍ମାଙ୍କ ପାଖରେ ନାଲିସ କରି ଡିଗ୍ରୀ ନେଇଥିଲେ । ଏଣେ ତାଙ୍କର ଅସଂଖ୍ୟ ଭକ୍ତ, ଚେଲା ଚମୁଣ୍ଡା, ଶିଷ୍ୟାମାନେ ସମ୍ମିଳିତ ଭାବରେ ଦନ୍ତରେ ତିରଣ ଦେଇ ପଦପଙ୍କଜରେ ଲଗାତାର କିଛିବର୍ଷ ଅଧିଆ ପଡ଼ିବାରୁ ବାବା ସ୍ୱର୍ଗଧାମ ଛାଡ଼ି କିଛି

ଦିନ ପାଇଁ ମର୍ତ୍ତ୍ୟମଣ୍ଡଳକୁ ଆସି ଏଇ ସଙ୍ଗମ ଖଟିରେ ଆସର ଜମେଇଛନ୍ତି । ମୋ ମନରେ ସନ୍ଦେହ ହେଲା । ବାବାଙ୍କରତ ଆଶ୍ରମ ରହିବା କଥା । କିନ୍ତୁ, ଏ ସଙ୍ଗମ ଖଟିର ଅର୍ଥ କ'ଣ ??

ସଙ୍ଗମ ମାନେଇତ ମିଳନ । ପ୍ରୟାଗ ସଙ୍ଗମ, ସାଗର ସଙ୍ଗମ, ତ୍ରିବେଣୀ ସଙ୍ଗମ, ଦେବତା ସଙ୍ଗମ, ପଶୁପକ୍ଷୀଙ୍କ ସଙ୍ଗମ, ନାରୀ-ପୁରୁଷ ସଙ୍ଗମ, ଗୁରୁ ଶିଷ୍ୟ ସଙ୍ଗମ, ରାଧାକୃଷ୍ଣ ସଙ୍ଗମ, ଇଚ୍ଛା ସଙ୍ଗମ, ଅନିଚ୍ଛା ସଙ୍ଗମ ଅଛି । ଲଣ୍ଡନରେ ଏକ କାର୍ଯ୍ୟାଳୟ ଅଛି ଯାହାର ନାମ ସଙ୍ଗମ ସ୍ଥଳ । ଅର୍ଥାତ୍ ଉପଯୁକ୍ତ ପାରିଶ୍ରମିକ ନେଇ ସେମାନେ ଅବିବାହିତ, ଅର୍ଦ୍ଧବିବାହିତ ବା ଛାଡ଼-ପତ୍ର ଦିଆ ଯୁବକ-ଯୁବତୀଙ୍କର ଅବାଧ ସଙ୍ଗମ କରେଇ ଦିଅନ୍ତି । ପୁଣି ମନେ ପଡ଼ିଲା ରାଜକପୁରଙ୍କ ବହୁଚର୍ଚ୍ଚିତ "ବୋଲ ରାଧା ବୋଲ ସଙ୍ଗମ ହୋଗା କି ନେହିଁ" । ତେବେ ବାବା ଏଠି କେଉଁ ପ୍ରକାର ସଙ୍ଗମ ଲୀଳାରେ ମାତିଛନ୍ତି ?

ଅନେକ ଅତର୍କନିଆ ଗବେଷଣା ଏବଂ ଠେଲା ପେଲା ଅନୁଶୀଳନ ପରେ ଜାଣିବାକୁ ପାଇଲି ଯେ ବାବା ଏଠାରେ ସର୍ବବିଧ ସଙ୍ଗମର ଲୀଳାକେନ୍ଦ୍ର ଖୋଲିଛନ୍ତି । କାହାର ରୋଗ ଭଲ କରୁଛନ୍ତି । କାହାକୁ ଚାକିରି କରେଇ ଦେଉ-ଛନ୍ତି । କାହାର ପ୍ରମୋଶନ, ବଦଳି, ବ୍ୟବସାୟରେ ଉନ୍ନତି ଆଦି କରାଉଛନ୍ତି । କାହାକୁ ଭେଣ୍ଡିଆ ପୁଅ ଦେବା ଠାରୁ କାହାକୁ ନିର୍ବାଚନରେ ଜିତାଇବା ପର୍ଯ୍ୟନ୍ତ ସବୁ କାମ ପାଇଁ ଏଠାରେ ଲୋକଙ୍କ ସଙ୍ଗମ ଘଟୁଛି । ଦିନଯାକ ଭିଡ଼ କହିଲେ ନସରେ । ବନ୍ଧୁ, ବାନ୍ଧବୀ, ଯୁବକ-ଯୁବତୀ, ଛାତ୍ରଛାତ୍ରୀଙ୍କର ଅପୂର୍ବ ସଙ୍ଗମ ଏଠାରେ । ଭୋର ସକାଳେ ଏବଂ ମୁହଁସଞ୍ଜ ବେଳେ କେବଳ ଯୌବନମୟୀ, ସୁନ୍ଦରୀ, ସ୍ୱାସ୍ଥ୍ୟବତୀ, ନିଃସନ୍ତାନବତୀ ଯୁବତୀମାନେ ବାବାଙ୍କ ପାଦତଳେ ପଡ଼ି ସନ୍ତାନବତୀ ହେବାର କାମନା କରନ୍ତି ।

ରାତିରେ ଯେଉଁ ସଙ୍ଗମ ହୁଏ ତାହା ସମ୍ପୂର୍ଣ୍ଣ ଜାତୀୟଏକତା, ସଂହତି, ଜନକଲ୍ୟାଣ ଏବଂ ବିଶ୍ୱଶାନ୍ତି ଉପରେ ଆଧାରିତ । ବନ୍ଧମୁଣ୍ଡାତ ଗୋଟିଏ ମିନି ଇଣ୍ଡିଆ । ସବୁ ଜାତିର, ସବୁ ରାଜ୍ୟର, ସବୁ ସମ୍ପ୍ରଦାୟର ନେତା, ଛୁଟା ନେତା, ଶ୍ରୋତା, ବକ୍ତା, ଲେଖକ, ଶ୍ରମିକ, ପ୍ରେମିକ ଏଠାରେ ମାଳମାଳ । ରାତିରେ ବାବା ତାଙ୍କର କେତେଜଣ ଅତି ନିକଟିଆ କଣ୍ଠଧର, କୁଅତେକା, ତେଲୁଆ ତେଲୀଙ୍କ ଗହଣରେ ଦେଶର ହାଲଚାଲ ସମ୍ପର୍କରେ ଆଲୋଚନା କରନ୍ତି । ତାଙ୍କ ଚାମଚାମାନଙ୍କର ମୁଖ ପାତ୍ରଙ୍କଠାରୁ ଯାହା ଜଣାଯାଏ ବାବାଙ୍କର ଯେଉଁ ଲୋକ-ପ୍ରିୟତା ଅଛି ସେ ନିର୍ବାଚନରେ ଠିଆ ହେଲେ ମହା ମହା ରଥୀଙ୍କର ଅମାନତ ଜବତ ହୋଇଯିବ ।

ବାବାଙ୍କର ଏତାଦୃଶ ସର୍ବବିଧ ସୁଗୁଣାବଳୀର ବହୁଳ ପ୍ରଚାର ଶୁଣି ମୋ ପେଟରେ ଥିବା ଭକ୍ତିରସ ଟିକକ ଉଚୁଳୁକେଇ ସିଧା ସରପଟ ବାହରି ଆସିବାକୁ ବସିଲା । ବାଧହୋଇ ଦିନେ ସନ୍ଧ୍ୟାରେ ଯାଇ ସଙ୍ଗମ ଖଟି ପାଖରେ ଥିବା ଘୁମୁଟିକଡ଼ରୁ କାନଠିଆ କରି କଣେଇ ଚାହିଁଲି । ଯାହା ଦେଖିଲି, ଯାହା ଶୁଣିଲି, ଯାହା ଅଙ୍ଗେ ନିଭେଇଲି ସବୁ କହିବି । ଆପଣମାନେ ପ୍ରସ୍ତୁତ ହୋଇ ବସିଯାନ୍ତୁ । ମଝିରେ ଏକ ଦୁଇ ସବୁ ବନ୍ଦ୍ ।

ଆସର ମଝିରେ ଆଜାନୁଲମ୍ବିତ ହରରଙ୍ଗୀ ଦାଢ଼ୀକୁ ମେଲେଇ ପଦ୍ମାସନରେ ବସିଥାନ୍ତି ବାବା ସ୍ୱୟଂ ମୃତ୍ୟୁଞ୍ଜୟ ଦେବ ଗୋସ୍ୱାମୀ ଦାସ ଫତେସିଂ ଠନ୍‌ଠନ୍‌ଓ୍ୱାଲଜୀ ମହାରଜ । ଚାରିପାଖରେ କେ-ଶବଙ୍କୁ ଘେରିଥିବା ପାଣ୍ଡବଙ୍କ ଭଳି ବସିଥାନ୍ତି କେତେଜଣ ଅତି ନିକଟିଆ ଚେଲା । ଟିକିଏ ଦୂରରୁ ଝାପ୍‌ସା ଦେଖା ଯାଉଥିଲେ ଦି'ଚାରିଟା ଚମ୍ପା, ଚାମେଲୀ, ଜୁଇ, ଯାଇ, ହେନା କି ମାଳତୀ । ଆମ ଦେଶର ହାଲ୍‌ଚାଲ ସମ୍ପର୍କରେ ଭକ୍ତମାନଙ୍କର ପ୍ରଶ୍ନର ଉତ୍ତର ବାବା ନନ୍‌ଷ୍ଟପ କହି ଚାଲିଥାନ୍ତି । ଚେଲାମାନେ ଘଟଘଟ ପିଇ ଯାଉଥାନ୍ତି ।

ଆମ ଦେଶର ନୂଆ ବଜେଟ ସମ୍ପର୍କରେ ଆଲୋଚନା ଆରମ୍ଭ କରି ବାବା କହିଲେ, ଆଗରୁ ଆମର ମହାନ୍ ନେତାମାନେ ବିଜ୍ଞତାସୂଚକ ଯୁକ୍ତି ବଳରେ ବଜେଟ୍ ପାଶ୍ କରଉଥିଲେ । ଏବେତ ଧସ୍ତାଧସ୍ତି, ଚପଲ ଫିଙ୍ଗା, ମାଇକ୍ରୋ ଫୋନ ଟଣାଓଟାରା ଚାଲିଛି । ନେତା ମନ୍ତ୍ରୀ ସଦସ୍ୟମାନଙ୍କ ମଧ୍ୟରେ କଲର ଧରା ଧରି, ଅଶ୍ରାବ୍ୟ ଗାଳି ଚାଲିଛି । ଜଣେ କହିଲା, ସରକାର ପରା କ'ଣ ନୂଆ କର ବସାଇବେ ? ନୂଆ କର ? ମାନେ ଯେଉଁମାନେ ଦୁଇଟା ନୂଆ ପରେ ଖାସ୍ତୁ ହେବେ ସେମାନଙ୍କୁ ଗ୍ରୀନ୍‌କାର୍ଡ଼ ମିଳିବ । ଯେଉଁମାନେ ଦୁଇଟାରୁ ଅଧିକ ଫସଲ ଅମଳ କରିବେ ତାଙ୍କ ଉପରେ କର ବସିବ । ହେଲେ ସେଇ ଗ୍ରୀନ୍‌କାର୍ଡ଼ଟା ପାଇଁ ଏତେ କଥା ? ଲୋକେ ଡାକ୍ତରଠାରୁ ମନ୍ତ୍ରୀ ଯାଏ ଏଥିପାଇଁ ଧରାଧରି କରୁଛନ୍ତି । କ'ଣ ଅଛି ସେ ଗ୍ରୀନ୍ କାର୍ଡ଼ରେ ? ତାଛଡ଼ା ସରକାର ଗ୍ରୀନ୍‌କାର୍ଡ଼ ବାଛିଲେ କାହିଁକି ? ଆଉରିତ ଅନେକ ରଙ୍ଗର କାର୍ଡ଼ ମିଳୁଛି ?

ଜଣେ କହିଲା, କିହୋ ଇଲେକ୍‌ଟ୍ରିବାଲାତ ଲାଲକାର୍ଡ଼ ନେଲେ । ଖ୍ରୀଷ୍ଟାନ୍‌ମାନଙ୍କର ଧଳାକାର୍ଡ଼, ମିଆଁ ଭାଇଙ୍କର କଳାକାର୍ଡ଼, ପ୍ରେମରେ ତ ନୀଳକାର୍ଡ଼, ଯାବତ ଯାନିଯାତ୍ରାରେ ହରରଙ୍ଗୀ କାର୍ଡ଼ । ଶେଷରେ ବାଧ ହୋଇ ସରକାର ବାଛିଲେ ଗ୍ରୀନ୍‌କାର୍ଡ଼ । ଏଇ କାର୍ଡ଼ଟେ ପାଇଲେ ଭାଗ୍ୟ ଖୋଲିଯିବ । ଚାକିରୀରେ ଗୋଟିଏ ଅଧିକା ଇନ୍‌କ୍ରିମେଣ୍ଟ, ଜମିପଟ୍ଟା, ପିଲାଙ୍କ ପାଠପଢ଼ା ଖର୍ଚ୍ଚ, ସଂରକ୍ଷଣ

କୋଟା ତା ଛଡ଼ା ଅନେକ ପ୍ରକାର ସୁବିଧା ସୁଯୋଗ । ଧରାଧରି ପାଇଁ କିଛି ଖର୍ଚ୍ଚ ହେଲେ କ୍ଷତି କ'ଣ ? ବାବା କହିଲେ ଶାନ୍ତି-ଶାନ୍ତି-ଶାନ୍ତି । ଏବେ କର କଥା ଶୁଣ । ସବୁ ସରକାର କର ବସାନ୍ତି । କିଏ କମ୍ କିଏ ବେଶୀ । ଆଜି-କାଲିର ଘାଟକର, ହାଟକର, ମଠକର, ପାଠକର, କାଠକର, ଫାଟକର, ଉଠକର, ବସକର, କୋଠାକର, ବନ୍ଧାକର, ଛନ୍ଦାକର, ଧନ୍ଦାକର, ଫନ୍ଦାକର, ଖନ୍ଦାକର, ରନ୍ଧାକର, ଜମିକର, ବାଡ଼ିକର, ଝାଡ଼ିକର, ଛଡ଼ିକର, ରଡ଼ିକର, ଜଳକର, ଫଳକର, ବଳକର, ଛଳକର, ଖଳକର, ପ୍ରେମକର, ହତ୍ୟାକର, ବାତ୍ୟାକର, ହାତକର, ଭାତକର, ଖାତକର, ଗାତକର, ଖୁଆକର, ପିଆକର, ଠିଆକର, ଶୁଆକର, ମିଆଁକର, ବିବିକର, ଶେଷରେ ବାହାରିଛି ଛୁଆକର । ଏଥିରେ ଆଶ୍ଚର୍ଯ୍ୟ ହେବାରେ କ'ଣ ଅଛି ? ଗୁର୍ଖା, ପାୟାଁ, ଆସାମିଆଁ, କାଶ୍ମୀରିଆ, ଝାଡ଼ଖଣ୍ଡିଆ, ସନ୍ତ୍ରାସବାଦିଆ ଯେମିତି ଉଠିଲେଣି ଶେଷରେ ସମସ୍ତଙ୍କୁ କହିବେ ତୁପ୍‌କର ।

କିଛି ସମୟ ସମସ୍ତେ ଚୁପ୍‌ଚାପ୍ ମାଗୁର ମାଛ । ବାବାଙ୍କ ହୁକୁମ, ତାପରେ ବାବା ଭୋଳାନାଥଙ୍କ ଭୋଗ ଲଗାଇ ମୁହଁରେ ଲଗାଇ ଦି ସୁର୍‌କି ନେଇ ବଢ଼ାଇ ଦେଲେ । ଗ୍ଲିଲ ଏ ହାତରୁ ସେ ହାତ ପୁଣି ଭୋଗ ବଣ୍ଟା ହେଲା ଭଳି । ତା ମଧ୍ୟରେ ଜଣେ କହିଲା ସରକାର ପରା ରଷିଆରେ ନେଇ ମିନିଇଣ୍ଡିଆ ଦେଖାଉଛନ୍ତି ? ବାବା କହିଲେ ଆଉ କ'ଣ ହିମାଳୟଠାରୁ କୁମାରୀକାଯାଏ ପୂରା ଇଣ୍ଡିଆଟାକୁ ନେଇ ଥୋଇ ଦେଇଥାନ୍ତେ ? ଏ ପରା ମିନି ଯୁଗ ?

ଦେଖୁନ କେମିତି ମିନିବୟ, ମିନିଗାର୍ଲ, ମିନିଫ୍ରକ୍, ମିନିବ୍ରା, ମିନିସାୟା, ମିନି ଟ୍ରକ୍, ମିନି ସ୍କୁଟର, ମିନି ମଟର, ମିନି ରେଡ଼ିଓ, ମିନି ଭିଡ଼ିଓ, ମିନିପେନ, ମିନି ଚେନ୍, ମିନି ବସ, ମିନି ପର୍ସ, ମିନି ଛତା, ମିନି ଯୋତା, ମିନି ଦାତା, ମିନି ନେତା, ମିନି ଘଡ଼ି, ମିନି ଶାଢ଼ୀ ସେମିତି ମିନି ଲାଇଫ୍, ମିନି ନାଇଫ୍ । ତା ଛଡ଼ା ଗୁଡ଼ାଏ ସଂଘ, ସମିତି କରି ଗନ୍ଦା ଚପଟ କରି ନାନା ଉତ୍ସବ ନକଲେ ଦେଶଟା ଯେ ଚଳୁଛି, ସରକାର ସକ୍ରିୟ ଏକଥା ପ୍ରମାଣିତ ହେବ କିପରି ?

ଜଣେ କହିଲା ମୋତେ ଗୁର୍ଖାଲଣ୍ଡ ବାଲା ଗନ୍ଦା ମାଗୁଥିଲେ । ବାବା କହିଲେ, ଆଗ ମଦରଲଣ୍ଡ କଥା ଚିନ୍ତା କର । ତାପରେ ନେଦରଲଣ୍ଡ, ଫାଦର-ଲଣ୍ଡ, ସବୁ ଲଣ୍ଡ କଥା ସମ୍ଭାଳିବ । ସବୁ ଆମ ନେତାମାନଙ୍କର ଭୁଲ । ସେମାନେ ଯଦି ଗନ୍ଦା ନେଇ ଭୋଟ ନ ଲଢ଼ନ୍ତେ ଏତେ ସଂଘ ବଢ଼ନ୍ତାନି । ଦରଦାମ ବଢ଼ନ୍ତାନି । ଏବେ ଯେଉଁ ବୋମା ଯୁଗନା ପାଟି ଫିଟେଇଲେ ପିଠି ଫାଟିଲା । ନ ହେଲେ ବମ୍ ଫୁଟିଲା ଢୋ ଢାଏ । ଇଏ ଘୋର କଳିକାଳ,

ଘରିଆଡ଼େ ଅନ୍ୟାୟ, ଦୁର୍ନୀତି, ଅତ୍ୟାଚାର, ଧର୍ଷଣ, ଯୌତୁକ ହତ୍ୟା, ଦଙ୍ଗା ଲଗି ରହିଛି । ଗାଁ ସବୁ ଖାଁ ଖାଁ ଲାଗିଲଣି । ସମସ୍ତେ ସହର ଆଡ଼କୁ ମୁହେଁଇଛନ୍ତି । ଗାଁରେ କ'ଣ ଅଛି ଯେ ? ଜୀବନକୁ ଉପଭୋଗ କରିବାକୁ ସହରରେ ସବୁଅଛି । ସିନେମା, ଟି. ଭି. ଭିଡ଼ିଓ କାରବାର ଯେତେ ବଢ଼ୁଛି ଏ ଟୋକା-ଟୋକୀଏ ସେତେ ମାତୁଛନ୍ତି । ପୂଜ୍ୟ ପୂଜା ଗୁରୁଲଘୁ ଜ୍ଞାନ ସବୁ କୁଆଡ଼େ ଉଭେଇଗଲାଣି ।

ଜଣେ କହିଲା ଆମ ସରକାର ପରା ଏବେ ସବୁ ମହାପୁରୁଷଙ୍କ ସ୍ମୃତି-ରକ୍ଷା ପାଇଁ ଷ୍ଟେଚ୍ୟୁ ତିଆରି କରୁଛନ୍ତି ? ଜୟନ୍ତୀ ପାଳନ କରୁଛନ୍ତି ? ଏଇତ କିଛିଦିନ ତଳେ ଆଦି ଶଙ୍କରାଚାର୍ଯ୍ୟଙ୍କ ଜୟନ୍ତୀ ଧୂମଧାମ୍‌ରେ ପାଳିତ ହୋଇ-ଯାଇଛି । ମନ୍ତ୍ରୀ ଡାକ ଟିକେଟ ଜାରୀ କରିଛନ୍ତି । ଆମ ବାବାଙ୍କ ପାଇଁ ଆମେ ଷ୍ଟେଚ୍ୟୁ ତିଆରି କରିବା । ସରକାରଙ୍କୁ କହି ଡାକଟିକଟ ବାହାର କରାଇବା ।

ବାବା କହିଲେ ବ୍ୟସ୍ତ ହୁଅନା । ସେଥିରୁ କ'ଣ ମିଳିବ ? ଏ ଦେଶରେ ଅନେକ ଷ୍ଟେଚ୍ୟୁ ତିଆରି ହୋଇ ସାରିଛି । କିଏ ସେସବୁର ରକ୍ଷଣାବେକ୍ଷଣ କରୁଛି କହିଲ ?

କୋଉଠି ଗାନ୍ଧୀ ବୁଢ଼ାଟା ବାଡ଼ି ଧରି ଅପନ୍ତରାରେ ପହରା ଦେଉଛି, ନେହେରୁଙ୍କ ଷ୍ଟେଚ୍ୟୁରେ କୁକୁର ଏକ୍ କରୁଛି, ସୁଭାଷଙ୍କ ଷ୍ଟେଚ୍ୟୁର ଘୋଡ଼ାଟା ଅଧା ଭାଙ୍ଗିଯାଇଛି । ଏବେ ଦେଶରେ ନେତା ମହାପୁରୁଷଙ୍କ ନାମରେ ହୋଟେଲ, ଜଳଖିଆ ଦୋକାନ, ମଦ ଦୋକାନ, ଲଜିଂ ସବୁ ତିଆରି ହେଲଣି । ଯେଉଁମାନଙ୍କ ନାମରେ ଡାକଟିକଟ ପ୍ରଚଳନ କରାଯାଇଛି ସେମାନେ ସବୁ ଡଷ୍ଟବିନ୍‌ରେ ପଡ଼ୁଛନ୍ତି ଅବା ସହରର ଗାଈ ଗୋରୁଙ୍କ ପେଟରେ ପଶୁଛନ୍ତି ।

ସେତେବେଳକୁ ରାତି ଟିକିଏ ବେଶୀ ହେଲଣି । ବାବା ବିଶ୍ରାମ କରିବେ । ପୁଣି ବ୍ରାହ୍ମ ମୁହୂର୍ତ୍ତରୁ ଉଠି ଭକ୍ତମାନଙ୍କୁ ଦରମ ଦେବେ । ଏଣୁ ସଭ ସାଙ୍ଗ ହେବା ଆଗରୁ ଆଉ ଗୋଟିଏ ଚିଲମ ଧରେଇ ଜଣେ ଭକ୍ତ ବଢ଼େଇ ଦେଲା । ବାବା ମୁହଁ ଲଗାଇ ବଢ଼ାଇଦେଲେ । ଭକ୍ତମାନେ ବି ଶୋଷା ଲେଖାଏଁ ନେଇ ମୁଣ୍ଡିଆ ମାରି ଜଣେ ଜଣେ ଉଠିଲେ । ମୋ ଉପରେ କାହା ନଜର ପଡ଼ିବା ଆଗରୁ ମୁଁ ସେଠାରୁ ପଛେଇ ପଛେଇ ଚମ୍ପଟ କଲି । ଜୟ ବାବା ଶ୍ରୀଲ ଶ୍ରୀମଦ୍ ମୃତ୍ୟୁଞ୍ଜୟ ଦାସ ଫତେ ସିଂ ଠନ୍‌ଠନ୍ ଓ୍ୱାଲା ମହାରାଜଙ୍କ ସଙ୍ଗମ ଖଟି ।





କବି ସାରଥୀ ଶ୍ରୀଚନ୍ଦନ ଓଡ଼ିଆ ସାହିତ୍ୟର ଏକ ସ୍ୱର୍ଣ୍ଣିତ ଉଚ୍ଚାରଣ । ସାହିତ୍ୟ ସଂଗଠନ ସହିତ ସାରସ୍ୱତ ସାଧନା ତାଙ୍କ ଜୀବନର ବ୍ରତ । ସେ ଏକାଧାରରେ ଜଣେ ପ୍ରାବନ୍ଧିକ, ନାଟ୍ୟକାର, କବି, ସମାଲୋଚକ, ବକ୍ତା, ଅଭିନେତା, ସଂଗଠକ, ରମ୍ୟ କଥାକାର । ସାହିତ୍ୟର ଯେଉଁ ବିଭାଗରେ ସେ ହାତ ଦେଇଛନ୍ତି ସଫଳତା ପାଇଛନ୍ତି । ସୁବର୍ଣ୍ଣରେଖା, ଅଭିଶାପ, ଗଭୀର ଜଳର ମାଛ, ଆଜି ଏଇ ତ୍ରିରଙ୍ଗୀ ପତାକା ତଳେ, ଭୂମିଠାରୁ ଭୂମାଯାଏ, କବି ଓ ପ୍ରିୟତମା, ଆମେ ସବୁ ଶିଶୁରେ, ମଜା ମଜା ଗପ ଆଉ ମନଛୁଆଁ ଗପ, ଏମିତି କ'ଣ ହୁଅନ୍ତାନି କେବେ ଆଦି ତାଙ୍କର ସଫଳ ସୃଷ୍ଟି । "ଅଥ ନେତା-ରସାୟମନମ୍" ତାଙ୍କର ସଦ୍ୟତମ ରମ୍ୟରଚନା ସଂଗ୍ରହ । ଏହା ସବୁ ସ୍ତରର ପାଠକ ପାଠିକାଙ୍କୁ ଆମୋଦିତ କରିବ, ଏଥିରେ ସନ୍ଦେହ ନାହିଁ ।

— ପ୍ରକାଶକ